କର୍ଣ୍ଣ ବୀରଙ୍କୁ ଦେଖିଣ ଦୁର୍ଦ୍ଧକ୍ଷ ବୋଲଇ
ପଥଛାଡ଼ି ଯୁଧିଷ୍ଠିରେ ବିଶେଷ ବାଧଇ।
ଯୁଧିଷ୍ଠିରଙ୍କର ତୁମ୍ଭେ ଅଟ ଜ୍ୟେଷ୍ଠଭ୍ରାତ
ତେଣୁ ବିନୟ କରିଣ କହୁଛି ବହୁତ।
କର୍ଣ୍ଣ ବୋଲେ ଦୁର୍ଦ୍ଧକ୍ଷ ତୁ କଲୁ ମୃତ୍ୟୁଇଚ୍ଛା
ବୁଡ଼ାଇଲୁ ଶ୍ରୀସମ୍ପଦ ଏହା ଥିଲା ବାଞ୍ଛା।
ନାଶଯିବାକାଳେ ହେଲା ବିପରୀତ ବୁଦ୍ଧି
ପାଦରେ ଏଡ଼ିଲୁ ତୁହିଁ ଏଡ଼େକ ସମୃଦ୍ଧି।
କୋପ ବହିଣ ଦୁର୍ଦ୍ଧକ୍ଷ ଗଦା ଘେନି ହସ୍ତେ
ପ୍ରହାର କଲାକ ନେଇ କର୍ଣ୍ଣବୀର ରଥେ।
ଭାଜିଣ ସେ ରଥବର ହୋଇଗଲା ଚୂନା
ତେଇଁ ରଥ ଆଡ଼ହେଲେ କର୍ଣ୍ଣ ମହାମନା।
କର୍ଣ୍ଣଙ୍କୁ ବିରଥ ଦେଖି ଧାଏଁ ସୋମଦତ୍ତ
ଉଗାଳିଲା ବହୁରଥୀ ଘେନି ଜୟଦ୍ରଥ।
କୁନ୍ତ ଅସିପତ୍ର ଆଉ ଲାଙ୍ଗିଆ ଗୁରୁଜ
ପ୍ରହାରନ୍ତେ ଦିଶେ ଯେହ୍ନେ ବିଜୁଳିର ତେଜ।
ଏକ ଯୋଦ୍ଧାକୁ ବେଢ଼ିଲେ ଦଶସହସ୍ର ରଥୀ
ତାହାଙ୍କୁ ଦୁର୍ଦ୍ଧକ୍ଷ ମନେ ନ କରଇ ଭୀତି।
ରେରେକାର କରିଣ ସେ ଦୁର୍ଦ୍ଧକ୍ଷ ଧାମଇ
ଛାଗଳ ପଲକୁ ଯେହ୍ନେ ବ୍ୟାଘ୍ର ଘଉଡ଼ଇ।
ଗର୍ଜିଣ ଧାଇଁଲେ ଯହୁଁ କୌରବ ସଇନି
ମୁଖ ଧ୍ୱନିରେ କମ୍ପିତ ହୋଇଲା ମେଦିନୀ।
ଗହଳ ଧାନ୍ଦୋଳ ଶୁଣି ଧାଏଁ ଭୀମସେନ
ରୂପ ଦେଖି ଜଣାଯାଏ ଯେହ୍ନେ କାଳଯମ।
ବୃକୋଦରଙ୍କୁ ଦେଖିଣ ସୈନ୍ୟ ଗଲେ ଭାଜି
ପାଣ୍ଡବ ସୁନ୍ଦର ଆସୁ କୋପେ ଗଳଗାଜି।
ଦୁର୍ଦ୍ଧକ୍ଷ ଯେ ଭୀମସେନ ଏକଇ ମୂରତି
ଧର୍ମଙ୍କୁ ଘେନି ମିଳିଲେ ଅର୍ଜୁନଙ୍କ କତି।
ଧୃଷ୍ଟଦ୍ୟୁମ୍ନ ରଥେ ଚଢ଼ି ଚଳିବାରୁ ବେଗେ
ଦ୍ରୋଣଗୁରୁ ଯାଇଁ ତାଙ୍କୁ ଓଗାଳିଲେ ଆଗେ।
କରେ ଧନୁଶର ଧରି ସେ ବୀର ପାଞ୍ଚାଳ
ବିନ୍ଧିଲା ନାରାଚ ଦ୍ରୋଣ ଗୁରୁଙ୍କୁ ତତ୍କାଳ।
ନିବାରନ୍ତେ ପାଞ୍ଚଶର ଘେନି ଦ୍ରୋଣଗୁରୁ
ଦେଖିଣ ଧୃଷ୍ଟଦ୍ୟୁମନ ଛେଦିଲା ତା ଦୂରୁ।
ପଞ୍ଚବିଂଶତି ନାରାଚ ଘେନି ଗୁରୁ ଦ୍ରୋଣ
ପବନହୁଁ ବେଗକରି ବିନ୍ଧିଲେ ତକ୍ଷଣ।
ଚଞ୍ଚଳ ଗତିରେ ଶର ବିନ୍ଧେ ଦ୍ରୋଣଗୁରୁ
ଧୃଷ୍ଟଦ୍ୟୁମ୍ନ ଦେଖି ତାହା ନିବାରଇ ଦୂରୁଁ।
ଦୁରିତସେନ ସେ ଧୃଷ୍ଟଦ୍ୟୁମ୍ନର ସାରଥି
ବାୟୁଗତି ପରି ଅଶ୍ୱ ବାହେ ଶୀଘ୍ରଗତି।
କ୍ଷଣେ ମର୍ତ୍ତ୍ୟେ ରହେ ପୁଣି କ୍ଷଣକେ ଆକାଶେ
ଦ୍ରୋଣ ପ୍ରଶଂସା କରନ୍ତି ସୂତଙ୍କୁ ବିଶେଷେ।
ଶଲ୍ୟରଥି ସ୍ୱର୍ଣ୍ଣମୟ ରଥଗୋଟି ମଣ୍ଡିତ
ତହିଁରେ ବସି ଯାଆନ୍ତେ ଉଗାଳେ ଶିଖଣ୍ଡୀ।
ଶଙ୍ଖଚିଲ ପକ୍ଷୀ ଲଗା ନାରାଚ ଦ୍ୱାଦଶ
ଶଲ୍ୟଙ୍କ ଉପରେ ବିନ୍ଧେ ଦ୍ରୁପଦର ଶିଷ୍ୟ।
ଶାୟକ ଆସିବା ଦେଖି ଶଲ୍ୟ ମହାରଥୀ
ବାୟବ୍ୟ ଅସ୍ତ୍ରରେ ବୀର ତାହା ନିବାରନ୍ତି।
ଘାତ ପ୍ରତିଘାତେ ଶୁଭେ ଶସ୍ତ୍ର ପରିତାଳ
ଉଠଇ ଅଗ୍ନିର ଶିଖା ଯେହ୍ନେ ଦାବାନଳ।
ଅନ୍ଧକାର ହୁଏ ଯେହ୍ନେ ବରଷା ଋତୁରେ
ଶରେ ଅନ୍ଧକାର ହୁଏ ସେପରି ଦିନରେ।
ବେଳୁବେଳ ଶୁଭେ ଭୟଙ୍କର ମୁଖଧ୍ୱନି
ତର୍ଜନ୍ତି ଗର୍ଜନ୍ତି ବୀରେ ମତ୍ତଗଜ ଜିଣି।
ଭାରତ ଯୁଦ୍ଧରେ ବୀର ବଡ଼ଇ ସମର୍ଥ
ଏକ ପ୍ରତି ଆରେକ ଯେ ଅଟେ ବଳବନ୍ତ।
ଦ୍ରୁପଦ ରାଜାନନ୍ଦନ କରେ ଧରି ବାଣ
ବିନ୍ଧି ଶଲ୍ୟ ଶରୀରକୁ କଲା ରକ୍ତବର୍ଣ୍ଣ।
ବିଶାଘାତେ ନାରାଚକୁ ଶଲ୍ୟ ଧରି କରେ
ବିନ୍ଧନ୍ତେ ଶିଖଣ୍ଡୀ ରଥ ଭାଙ୍ଗିଲା ସତ୍ୱରେ।
ତହୁଁ ଶିଖଣ୍ଡୀ କୁମୁଦ ଗଜ ଆରୋହିଲା
ଶଲ୍ୟଙ୍କ ଉପରେ ନେଇ କୁନ୍ତ ପ୍ରହାରିଲା।
କୁନ୍ତ ମୂନରେ ଶଲ୍ୟଙ୍କ ରଥକୁ ସେ ଟୋଳି
ଚକ୍ରପରି ବୁଲାଇଲା ତାକୁ ମହାବଳୀ।
ରଥ ତେଜି ଶଲ୍ୟବୀର ପଡ଼ି ଭୂମିଗତ
ତାହାଙ୍କ ଅବସ୍ଥା ଦେଖି ଧାଏଁ ସୋମଦତ୍ତ।
ଶଲ୍ୟ ଯାଇ ଆରୋହିଲେ ସୋମଦତ୍ତ ରଥ
ଦୁଇ ଯୋଦ୍ଧା ଏକ ହୋଇ କଲେ ଶରାଘାତ।
ଦୁହେଁ ଶର ବରଷିଲେ ଏକରଥେ ବସି
ସେ ଅସ୍ତ୍ରମାନଙ୍କ ତେଜ ଅଗ୍ନି ପ୍ରାୟ ଦିଶି।
ସମରରେ ଜ୍ୱାଳାବଳି ଜାଣ ଆତଯାତେ
ଅଦୃଶ୍ୟ ହୋଇଲେ ସୂର୍ଯ୍ୟ ଗଗନର ପଥେ।
ଦେଖ ଆହେ ମହିମା ସେ ବିର ଶିଖଣ୍ଡୀର
ରଣେ ଅନିର୍ବାର ଅଟେ କ୍ଷତ୍ରୀ ମହାବୀର।
ଏକା ଯୋଦ୍ଧାକୁ ବିନ୍ଧିଲେ ପଞ୍ଚସହସ୍ର ରଥୀ
ସର୍ବେ ଏକମୁଖ ହୋଇ ନାରାଚ ବିନ୍ଧନ୍ତି।
ମହୀ କମ୍ପିଲା କ୍ଷତ୍ରୀଙ୍କ ଗୁଣନାଦ ଶବ୍ଦେ
ପୃଥ୍ୱୀ ଟଳମଳ ହେଲା ଗଜଙ୍କର ପାଦେ।
ଶଲ୍ୟ ସୋମଦତ୍ତ ଏହି ବେନି ମହାରଥୀ
ଶତ ଶତ ନାରାଚ ସେ କୋପରେ ବିନ୍ଧନ୍ତି।

ଦୂରରୁ ଦେଖିଣ ତାହା ପାଞ୍ଚାଳ ନନ୍ଦନ
ଧାତିକାରେ ବିନ୍ଧିଲା ସେ ପାଞ୍ଚଗୋଟି ବାଣ ।
ସୋମଦତ୍ତ ଶଲ୍ୟଙ୍କର ନାରାଚ ଛେଦିଲା
ତିନି ତିନିବାଣ ଆଉମାନଙ୍କୁ ବିନ୍ଧିଲା ।
ଶିଖଣ୍ଡୀ ବିନ୍ଧେ ନାରାଚ ଅତି ଅଗୋଚର
ସେ ଅସ୍ତ୍ରମାନ ପଡ଼ିଲା ଯୋଦ୍ଧାଙ୍କ ଉପର ।
ସେହ୍ନା ଫୁଟି ନାରାଚ ଯେ ଭେଦେ ସର୍ବଅଙ୍ଗ
ମନ୍ଦାର କୁସୁମ ପରି ଦିଶେ ତାଙ୍କ ରଙ୍ଗ ।
ତହୁଁ ଯୁଦ୍ଧେ ଭଙ୍ଗ ଦେଲେ ସମସ୍ତ ଯୋଦ୍ଧାଏ
ସାଧୁ ବୋଲି ପ୍ରଶଂସିଲେ ଶିଖଣ୍ଡୀକୁ ରାଏ ।
ଏଡ଼େ ବଳବନ୍ତ ତୁହି ଶ୍ରୀକୃଷ୍ଣ ପ୍ରସାଦେ
କିଏ ସେଠିଆ ହୋଇବ ତୋଛାମୁରେ ଯୁଦ୍ଧେ ।
ଭୀଷ୍ମ ଅର୍ଜ୍ଜୁନଙ୍କ ଯୁଦ୍ଧ ଅତି ଘୋରତର
ମର୍ତ୍ତ୍ୟମଣ୍ଡଳରେ କିଏ ସମାନ ତାଙ୍କର ।।
ମାରି ନ ପାରିଲେ ଯହୁଁ ଯୋଦ୍ଧାଙ୍କୁ ଗାଙ୍ଗେୟ
ବେଳକୁ ବେଳ ସମର ହେଲା ଅତିଶୟ ।
ଦ୍ରୋଣଙ୍କର ସଙ୍ଗେ ଯୁଝେ ସେ ଧୃଷ୍ଟଦ୍ୟୁମନ
ନକ୍ଷତ୍ରପନ୍ତି ପରାୟେ ବିନ୍ଧେ ଶରମାନ ।
ଶଲ୍ୟ ସୋମଦତ୍ତ ବେନି ଏକାକେ ଶିଖଣ୍ଡୀ
ଷୋଳସହସ୍ର ଯୋଦ୍ଧାରେ ହୋଇଛି ସେ ମଣ୍ଡି ।
ଦୁର୍ଦ୍ଧର୍ଷ ସଙ୍ଗତେ ଯୁଦ୍ଧ କରେ ଦୁଃଶାସନ
ନକୁଳର ସଙ୍ଗେ ଯୁଝେ ଜୟଦ୍ରଥ ଜାଣ ।
ଉପରୋଧ ନାହିଁ କିଛି ନ ଘୁଞ୍ଚନ୍ତି ରଣେ
ଅଶ୍ୱ ଗଜ ଆବୋରିଣ ଯୁଝି ଜଣେ ଜଣେ ।
ଏପରି ଯୁଦ୍ଧ କରନ୍ତି ବେନିପକ୍ଷ ସୈନି
ସୂର୍ଯ୍ୟ ଅସ୍ତ ହୋଇବାକୁ ଅଛି ଘଡ଼ି ତିନି ।
କ୍ଷୁଧା ତୃଷାରେ ବିମୁଖ ହେଲେ ରଥୀ ଯୋଧୀ
ସର୍ବେ ଅଶକତେ ଶର ନ ପାରନ୍ତି ବିନ୍ଧି ।
ମାନଗୋବିନ୍ଦ ଅଗ୍ରତେ କହଇ ଶକୁନି
ଉପବାସେ ଅଶକତ ହେଲେ ସର୍ବ ସୈନି ।
ତୁହି ରାଜରାଜେଶ୍ୱର ଅଟୁ ମହାବାହୁ
ଆଜ୍ଞାଦିଅ କୁରୁନାଥ ଯୁଦ୍ଧ ଆଜି ରହୁ ।
ମନ୍ତ୍ରୀବରର ବଚନେ କହେ କୁରୁରାଜ
ଭୀଷ୍ମଙ୍କୁ କହ ମାତୁଳ ଯୁଦ୍ଧ ରହୁ ଆଜ ।
ରାଜାଙ୍କର ବଚନରେ ସେ ମନ୍ତ୍ରୀ ଶକୁନି
ରଥଧ୍ୱଜ ପରେ ଯାଇ କଲା ଶଙ୍ଖଧ୍ୱନି ।
ଆଜି ଯୁଦ୍ଧ ରହୁ ବୋଲି ବୋଲେ ମନ୍ତ୍ରୀବର
ବେଳ ଅସ୍ତ ହେଲା ଭୀଷ୍ମ ସମର ନ କର ।
ସମରରେ ମହାଶ୍ରାନ୍ତ ହେଲା ବେଳ ଅସ୍ତ
ଧନୁ ଧରି ନ ପାରନ୍ତି ଦେହ ଅଶକତ ।
ସମସ୍ତ ଯୋଦ୍ଧାମାନଙ୍କୁ ବିରସ ସେ ଦେଖି
ଶାନ୍ତନୁଙ୍କର ନନ୍ଦନ ସମର ଉପେକ୍ଷି ।
ରଣ ତ୍ୟାଗ କରୁଁ କରୁଁ ସୂର୍ଯ୍ୟ ଅସ୍ତ ହେଲେ
ଉଭୟ ପକ୍ଷର ସୈନ୍ୟ ଉପାସେ ରହିଲେ ।
ପାର୍ଥଙ୍କୁ ଚାହିଁ ଶ୍ରୀକୃଷ୍ଣ ବଚନ କହିଲେ
ସମର ରହିତ ହେଲା ଦେଖ ତୁମ୍ଭେ ଭଲେ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ଯାଇ ଏକାସନେ
ଆସ୍ଥାନ କରି ବସିଲେ ଭୀମ ଦୁଃଶାସନେ ।
କର୍ଣ୍ଣାର୍ଜ୍ଜୁନ କଲେ ଏକ ଆସନରେ ବିଜେ
ସୋଦର ଗୁଣ ଘେନିଲେ ରାଜା ମହାରାଜେ ।
ଯୁଦ୍ଧକଥା ପରସ୍ପର କୁହାକୁହି ହୁଅନ୍ତି
କିଏ କାହାକୁ ମାଇଲା ବୋଲି ପଚାରନ୍ତି ।
କେହି ରନ୍ଧନ ଭୋଜନ କାର୍ଯ୍ୟରେ ଲାଗିଲେ
କେହିଯୁଦ୍ଧେ ଶ୍ରାନ୍ତହୋଇ ଅଚେତେ ଶୋଇଲେ ।
ଏମନ୍ତ ଶ୍ରମ ହରିଣ ଗଲେ ଯେଝା ବାସ
ନିତ୍ୟକର୍ମ ଭୋଜନାନ୍ତେ ହେଲେ ନିଦ୍ରାବଶ ।
ରଜନୀ ଶେଷରେ ଯହୁଁ ପ୍ରଭାତ ହୋଇଲା
ଅରୁଣ ସାରଥି ରଥ ସଜାଇ ଆଣିଲା ।
ପୂର୍ବେ ଯେଉଁ ସପ୍ତଅଶ୍ୱ ସୂର୍ଯ୍ୟ ପାଇଥିଲେ
ସାରଥି ଆଣି ସବୁଙ୍କୁ ରଥରେ ଯୋଚିଲେ ।
ଦିବ୍ୟ ରତ୍ନରେ ମଣ୍ଡିଣ ସୂର୍ଯ୍ୟଙ୍କର ରଥ
ଉଦୟାଚଳେ ଆଣନ୍ତେ ବିଜେ ଦିନନାଥ ।
ଛାୟାର ବଲ୍ଲଭନାଥ ଜଗତ୍ ପ୍ରତିପାଳି
ଅନ୍ଧକାର ନିବାରଣ କଲେ ଅଂଶୁମାଳି ।
ବ୍ରାହ୍ମଣ ସନ୍ନ୍ୟାସୀ ଯୋଗୀ ଶୁଚିବନ୍ତ ଯତି
ନଦୀ ତଡ଼ାଗରେ ନିତ୍ୟକର୍ମ ଆଚରନ୍ତି ।
ଏ ସମୟେ ଶଙ୍ଖନାଦ କଲେ ମଧୁହାରୀ
ଦଣ୍ଡସାଜ ସାଜବୋଲି ବାଜେଭେରୀ ତୁରୀ ।
କଉରବଙ୍କ ପକ୍ଷରେ ସର୍ବେ ସୈନ୍ୟଥାଟ
ନିତ୍ୟକର୍ମ ସାରିବାକୁ ଗଲେ ନିଜ ଘାଟ ।
ଶାନ୍ତନୁସୂନୁ ସ୍ନାହାନ ତର୍ପଣାଦି ସାରି
ଘରେ ବସି ମାଧବଙ୍କୁ ଚିତ୍ତରେ ସୁମରି ।
ମାଧବ ହେତୁରୁ ମୋର ସମସ୍ତ ମଙ୍ଗଳ
ପୂଜେ ଗଣେଶ ମୁଁ ଭକ୍ତିକରି ଚରକାଳ ।
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତରେ ଶାରଙ୍ଗ
ପୃଥୀଭାର ନିବାରଣ କରୁ କୂଟଭଙ୍ଗ ।
ଜୟ ଜଗନ୍ନାଥ ନୀଳକନ୍ଦର ନିବାସୀ
କଳିକାଳ ଦୁଃଖ ତବ ଦରଶନେ ନାଶି ।
ଜୟ ଜଗନ୍ନାଥ ତୁହି ସାଧୁହିତକାରି
ସର୍ବଜନକୁ ଉଦ୍ଧରୁ ଜଗତ ବିହାରି ।

ଜୟ ଜଗତଜୀବନ ଜଗଦୁଦ୍ଧାରଣ
ଗୋପୀଙ୍କ ମନମୋହନ ଶରଣ ରକ୍ଷଣ।
ଯୋଗୀଜନ ବକ୍ଷସ୍ଥଳେ ତୁହି ପଦ୍ମମାଳି
କାଳିନ୍ଦୀ ହ୍ରଦରେ କାଳୀନାଗ ଦର୍ପ ଦଳି।
ଭକତ ଜନ ବାନ୍ଧବ ତୁହି ଜଗନ୍ନାଥ
ଭବର ଦୁଃଖ ଖଣ୍ଡନେ ଅଟୁ ସାମରଥ।
ତୁଳସୀ ବଲ୍ଲଭ ପାଦେ ଥାଉ ମୋର ଧ୍ୟାନ
ଶୂଦ୍ରମୁନି ଶାରଳାର ତୁ ମାତ୍ର ଶରଣ।

## ଦ୍ୱିତୀୟଦିନ ଯୁଦ୍ଧରେ ଭୀଷ୍ମ କର୍ତ୍ତୃକ ପାଣ୍ଡବଙ୍କର ଦଶସହସ୍ର ଯୋଦ୍ଧା ପତନ

ଏଥୁ ଅନନ୍ତରେ ଶୁଣ ମନ କର୍ଣ୍ଣ ଦେଇ
ଦ୍ୱିତୀୟ ଦିନର କଥା କହିବଇଁ ମୁହିଁ।
ସ୍ନାନବିଧି ସାରି ସୈନ୍ୟ ଶଙ୍ଖଶବ୍ଦ ଶୁଣି
ସଜ୍ଜିତ ହୋଇଲେ ସର୍ବେ ଅସ୍ତ୍ର ଶସ୍ତ୍ର ଘେନି।
ବୀରତୂର ବାଜଇ ଯେ ଟମକ ନିଶାଣ
ସଜ ହେଲେ ରାଜାମାନେ ଘେନି ଧନୁ ତୂଣ।
ସାଜ ସାଜ ବୋଲି ଶବ୍ଦ ଶୁଭେ ବେଗୁବେଗ
ରଥ ଗଜ ଅଶ୍ୱ ସାଜି ହେଲେ ବେନି ଭାଗ।
ଆବୋରି ରହିଲେ ବଳ ଯେ ଯାହାର କତି
ପୂର୍ବେ ପାଣ୍ଡବେ ପଶ୍ଚିମ ଭାଗେ କୁରୁପତି।
କୃଷ୍ଣ ବର୍ଣ୍ଣର ତୁରଙ୍ଗ ସମ ମହାନାଗ
ଦିବ୍ୟବେଶେ କୁରୁରାଣ ସଜ ହୁଏ ବେଗ।
ଉଭାରିଲେ ପାଟଛତ୍ର ଉଦ୍ଦଣ୍ଡ ଚାମର
ତାରକାସୁର ଯୁଦ୍ଧରେ ଯେସନେ କୁମାର।
ଡାହାଣରେ ଦୁଃଶାସନ ବାମେ ଜୟଦ୍ରଥ
ଆସେ ସିନ୍ଧୁ ମଲ୍ଲ ଘେନି ଦଶସସ୍ର ରଥ।
ପଛେ ଅଳମ୍ବୁଷ ରାଜା ଥାଟକୁ ପଲାଣି
ବାମେଦକ୍ଷେ ସୈନ୍ୟତାର ଏକାଦଶକ୍ଷୌଣୀ।
ଧାର୍ତ୍ତରାଷ୍ଟ୍ର ସମ୍ଭାରରେ ହୋଇଲା ବାହାର
ବିରୁପାକ୍ଷକୁ ସୁମରି ମନର ମଧ୍ୟର।
ମାହେନ୍ଦ୍ର ଯୋଗ ବେଳାରେ ବିଜେ ଯୁଧିଷ୍ଠିର
ଧର୍ମନିଷ୍ଠ ଶ୍ରୀକୃଷ୍ଣଙ୍କୁ ଚିନ୍ତି ହୃଦୟର।
ଧର୍ମଙ୍କ ବାମେ ଦ୍ରୁପଦ ଡାହାଣେ ବିରାଟେ
ନିର୍ଝର ଦେଶର ରାଜା ଅଗ୍ରଗାମୀ ଥାଟେ।
ସମସ୍ତେ ଚାହିଁ ଦେଖିଲେ ସେ କପିକେତନ
ହନୁମନ୍ତ ମୁଖ ଦେଖି କଲେକ ଗମନ।
ଦଧିବାମନ ପରାୟେ ଦିଶେ ତାର ମୁଖ
ଦଧିବାମନ ସୁମରି ଦିଅନ୍ତି ସେ ଡାକ।
ଗଜ ପୃଷ୍ଠରେ ଆରୋହି ଯାନ୍ତି ଧର୍ମସୁତ
ଶ୍ରୀକୃଷ୍ଣ ରଥରେ ଚଢ଼ି ସଙ୍ଗେ ଘେନି ପାର୍ଥ।
ଶୁଣ ହେ ଚୈତନ୍ୟ ପଞ୍ଚମନ କରି ସ୍ଥିର
ମନୁବକ୍ତ ପିଣ୍ଡ ପ୍ରାଣ ଅଟେ ଏକ ମୋର।
ମନ ବୋଲେ ଚୈତନ୍ୟ ତୁ ହେତୁକରି ଶୁଣ
ହତ ହେବେ ପାଣ୍ଡବଙ୍କ ଥାଟ ବହୁସୈନ୍ୟ।
ଭୀଷ୍ମଦେବଙ୍କର ଅଟେ ସୂର୍ଯ୍ୟ ତୁଲ୍ୟ ଜ୍ୟୋତି
ଇଚ୍ଛାମୃତ୍ୟୁ ସେ ଗାଙ୍ଗେୟ ଅଟେ ମହାରଥୀ।
ନିର୍ଧୂମଅଗ୍ନି ସଦୃଶ ବିରାଜଇ କାୟ
ବେନି ଲୋଚନ ଭ୍ରମଇ କାଳଚକ୍ର ପ୍ରାୟ।
ସହସ୍ର ସୂର୍ଯ୍ୟ ପରାୟେ ତାଙ୍କ ତେଜ ଦିଶି
ଏକାକେ କି ସର୍ବସୈନ୍ୟ ପକାଇବେ ନାଶି।
ଦେଖିକରି ପ୍ରଶଂସଇ ମାନଚକ୍ରବର୍ତ୍ତୀ
ଯମପରି ଦିଶୁଅଛି ଭୀଷ୍ମଙ୍କର ମୂର୍ତ୍ତି।
ନିଶ୍ଚୟ ଗାଙ୍ଗେୟ ମୋର ଫେଡ଼ିଲେ ଦୁର୍ଗତି
ପାଣ୍ଡବ ବଳଙ୍କୁ ଆଜି ଦହିବେ ଏ ଘାନ୍ତି।
ପନ୍ନଗ ନାରାୟଣ ଯେ ଘେନି ରତ୍ନମାଳା
ନେଇ ଲମ୍ବାଇ ଦେଲାକ ଭୀଷ୍ମଙ୍କର ଗଳା।
ତୁମ୍ଭେ ଯଦ୍ୟପି ଜିଣିବ ଏ ଭାରତ ଯୁଦ୍ଧେ
ଭୁଞ୍ଜିବଇଁ ପଞ୍ଚରାଜ୍ୟ ତୁମ୍ଭର ପ୍ରସାଦେ।
ଶୁଭ ଅନୁକୂଳେ ତୁମ୍ଭେ ସମରକୁ ଯାଅ
ଅସଂଖ୍ୟ ହସ୍ତୀ ଅଶ୍ୱଙ୍କୁ ସଙ୍ଗତରେ ନିଅ।
ଗଙ୍ଗାର ନନ୍ଦନ ରଥେ ନିଷାଦ ସାରଥି
ଭାର୍ଗବର ନନ୍ଦନ ଯେ ଜଗଜ୍ଜିତ କ୍ଷତ୍ରୀ।
ଚୋଖାର ତୁରଙ୍ଗମ ଯେ ହରିତାଳ ମେଘ
ପବନୁ ଅଧିକ ଚଳେ ତାର ରଥ ବେଗ।
ଅଶୀସସ୍ର ବଳ ଭୁଜେ କଣୟର ଧନୁ
ନିର୍ବାଣ ବିଦ୍ୟାକୁ ଶିକ୍ଷା ଦେଲେ ଶାୟନ୍ତନୁ।
ନାରାଚ ପୂରାଇ ବେନିକୋଟି ବେନିତୂଣେ
ଧବଳ କେଶର ଚିହ୍ନ ଉଡ଼ାଇଲେ ଶୂନ୍ୟେ।
ଦିନକର ରଥପ୍ରାୟେ ଆସନ୍ତେ ଦିଶଇ
ସ୍ୱର୍ଗପୁରୁଁ ଇନ୍ଦ୍ରଦେବ ମର୍ତ୍ତ୍ୟେ କି ଆସଇ।
ଅର୍ଜ୍ଜୁନକୁ ଦେଖିକରି ହାତେ ଧନୁ ଧରି
ଆଜି କାହିଁ ଯିବୁ ପାର୍ଥ ନୁହେ କାଲିପରି।
ଦୁର୍ଦ୍ଧକ୍ଷ ଶରଣ ପଶି ରଣ କଲା କାଲି
ସନ୍ଧି ହେବ ବୋଲି ଯୁଦ୍ଧ ଉପରୋଧ କଲି।
ଅର୍ଜ୍ଜୁନ ବୋଲେ କାଲି ମୁଁ ଛାଡ଼ିଲି ଉପ୍ରୋଧେ
ନିଶ୍ଚୟ ସମ୍ପଦ ଆଜି ବୁଡ଼ାଇବି ଯୁଦ୍ଧେ।
ଅଶ୍ୱଥାମା ଦ୍ରୋଣ କର୍ଣ୍ଣ ଆଦି ଦେଖୁଥିବେ
ଗାନ୍ଧାରୀ ପୁତ୍ରକୁ କେହି ରଖି ନ ପାରିବେ।

ଅର୍ଜ୍ଜୁନ ବଚନ ଶୁଣି ଗଙ୍ଗାଙ୍କର ସୁତ
କହୁଁ କହୁଁ ଆକ୍ରମିଲା ନନ୍ଦିଘୋଷ ରଥ।
ଯେମନ୍ତେ କି ରାହୁ ଗ୍ରାସ କରଇ ଶଶାଙ୍କ
ଅର୍ଜ୍ଜୁନଙ୍କୁ ଗ୍ରାସକଲା କ୍ଷତ୍ରୀ ରଣରଙ୍କ।
କରେ ନାରାଚକୁ ଧରି ଟଙ୍କାରଇ ଧନୁ
ଶର ଯୋଚିଣ ଅର୍ଜ୍ଜୁନ ବିନ୍ଧେ ଭୀଷ୍ମ ତନୁ।
ଦେଖି ଧନୁରେ ପୂରାଇ ଶର ଅୟୁବ୍ରତେ
ଗଙ୍ଗା ନନ୍ଦନ ବିନ୍ଧିଲେ କୃଷ୍ଣ ପାର୍ଥ ରଥେ।
ପୁଣି ସହସ୍ରେ ନାରାଚ ବିନ୍ଧିଲେ ଆକର୍ଷି
ନନ୍ଦିଘୋଷ ରଥପରେ ନାରାଚ ବରଷି।
ଅନିବାରଣ ଶରକୁ ଘେନି ବୀରପାର୍ଥ
ଏକ ଘାନ୍ତିକେ ପେଷିଲା ନାରାଚ ଅୟୁତ।
ଭୀଷ୍ମଙ୍କର ନାରାଚକୁ ଛେଦିଲା ଫାଲ୍‌ଗୁନି
ପୁଣି ଗାଙ୍ଗେୟ ପେଷିଲା ଦିବ୍ୟଅସ୍ତ୍ର ଘେନି।
ପଞ୍ଚମୁନା ନାରାଚ ସେ ବେନି ବେନିଶତ
ଅଶ୍ୱଙ୍କର ଉପରକୁ ଛାଡ଼ିଲେ ତୁରିତ।
ତିନିଲୋକରେ ବିଖ୍ୟାତ ଭୀଷ୍ମଙ୍କ ମହିମା
ବୀରଙ୍କ ମଧ୍ୟେ ସୁନ୍ଦରକ୍ଷତ୍ରୀ ମହାତ୍ମା।
ରଥପରେ ଆରୋହନ୍ତେ ଭୀମ ବୀରବର
ମରୁତ ସାରଥି ବାହେ ରଥକୁ ତାହାର।
ଆରୋହଣ କରି ରଥେ ହେଲେ ଅଗ୍ରଗାମୀ
କୌରବ ଥାଟେ ପଶିଲେ ସେ ବୀର ବିକ୍ରମି।
ଲୌହର ଧନୁରେ ଲୌହ ଗୁଣ ଲାଗିଅଛି
ଅଷ୍ଟ ରତନରେ ଧନୁ ସଜ୍ଜିତ ହୋଇଛି।
ଧନୁ ଟଙ୍କାରନ୍ତେ ଝଲକଇ ରତ୍ନମଣି
ଜଳଧର ଦେହେ ବିଜୁଳିର ତେଜ ଜାଣି।
ତୀକ୍ଷ୍ଣ ମୁନା ଶରଙ୍କରେ କଙ୍କପକ୍ଷୀ ଖଞ୍ଜି
ନାରାଚର ତେଜ ହୁଏ ସୂର୍ଯ୍ୟତେଜ ଗଞ୍ଜି।
ଆରେଆରେ ବୋଲିଡାକେ ପବନରସୁତ
ଭୟରେ ଛାମୁକୁ କେହି ନ ଆଣନ୍ତି ରଥ।
ଅପର୍ଯ୍ୟାପ୍ତ ଶରବିନ୍ଧି ପବନ ସନ୍ତତି
ପଳାଇଲେ ଯୋଦ୍ଧାଏ କେ ନ ରହିଲେ କତି।
ଅନଳ ତେଜକୁ ଜିଣି ତା ଶର ଅଟଇ
ଥାଟ ଭଗ୍ନ ଦେଖିକରି ସୋମଦତ୍ତ ଧାଇଁ।
ଭୀମସେନ ଆଗେ ନେଇ ଉଭାକଲା ରଥ
ତିନିଶତ ନାରାଚକୁ ଯୋଚି ସୋମଦତ୍ତ।
ଭୀମସେନ ଉପରକୁ ବିନ୍ଧନ୍ତେ ସତ୍ୱରେ
ନାରାଚ ଚୂର୍ଣ୍ଣ ହୋଇଲା ମାରୁତି ଅଙ୍ଗରେ।
ପୁଣି ସହସ୍ର ନାରାଚ ଅଗ୍ନି ପ୍ରାୟ ଜ୍ୟୋତି
ପେଷୁ ଭୀମସେନ ଦେଖି ବାମଅଙ୍ଗ ପାତି।

ରଥ ଉପରୁ ଡେଇଁଣ ଗଦା ଘେନି ଧାଇଁ
ତାକୁ ସସ୍ତ୍ର ବାଣ ବିନ୍ଧି ସୋମଦତ୍ତ ତହିଁ।
ସେହି ତୀକ୍ଷ୍ଣ ବାଣମାନ ଶୂନ୍ୟେ ଚଳିଗଲା
ଭୀମସେନର ହୃଦରେ ଯାଇଣ ପଡ଼ିଲା।
ଲୌହଶର ପରାୟେକ ଯାର ରୋମାବଳି
ତହିଁ ପଡ଼ିଲେ ନାରାଚ ପାରଇକି ଗଳି।
ଦେଖିକରି ଭୀମସେନ ଗଦା ବୁଲାଇଲା
ସୋମଦତ୍ତ ଶରସବୁ ବ୍ୟର୍ଥ କରିଦେଲା।
ଭାଜି ଶରମାନ ଯହୁଁ ହୋଇଗଲା ଚୂର
ଧାଇଁ ସୋମଦତ୍ତ ରଥେ ପିଟେ ଗଦାବର।
ପର୍ବତହୁଁ ଗୁରୁ ଅଟେ ଭୀମସେନ ଗଦା
ପିଟନ୍ତେ ପର୍ବତ ସବୁ ହୋଇଯାଏ ପଦା।
ସୋମଦତ୍ତ ରଥପରେ ପିଟି ଗଦାବର
ତାହାର ରଥ ଗୋଟିକୁ କଲା ଶତଚୂର।
ଅଶ୍ୱ ସାରଥିକୁ ଭୀମ ନାଶିଲା ତ୍ୱରିତେ
ସର୍ବେ ନାଶ ଗଲେ ଭୀମ ଗଦାର ଆଘାତେ।
ସୋମଦତ୍ତ ମହୀପାଳ ଲୌହଗଦା ନେଇ
ଭୀମ ବକ୍ଷସ୍ଥଳେ ତାହା ପିଟିଲା ନିଠାଇ।
ଦେଖିଣ ଭୀମ ପାତିଲା ତାର ବାମଅଙ୍ଗ
ସୋମଦତ୍ତ ଗଦା ପଡ଼ି ହୋଇଗଲା ଭଙ୍ଗ।
ଗଦା ଭାଙ୍ଗିଯାନ୍ତେ ସେହୁ ହେଲା ଶୂନ୍ୟହସ୍ତ
ସମରରୁ ଘୁଞ୍ଚିଗଲା ହୋଇଣ ନିସତ।
ପଛରେ ଗୋଡ଼ାଇ ତହିଁ କାଳଦଣ୍ଡ ପାଣି
ରହରହ ସୋମଦତ୍ତ ବୋଲେ ବୀରମଣି।
ସୋମଦତ୍ତଙ୍କୁ କଟାଳ ଦେଖି କୃପାଚାର୍ଯ୍ୟ
ଭୀମସେନକୁ ବିନ୍ଧିଲା ସହସ୍ର ନାରାଚ।
ନାରାଚ ପଡ଼ନ୍ତେ ତହୁଁ ଗର୍ଜିଣ ପାବନି
କୃପାଚାର୍ଯ୍ୟ ଉପରକୁ ଧାଏଁ ଗଦା ଘେନି।
ଗଜୟୁଥ ଦେଖି ଯେହ୍ନେ ଧାମଇଁ କେଶରୀ
କୃପକୁ ଭେଟଇ ତେହ୍ନେ ଗଦାହାତେ ଧରି।
ଆକ୍ରୋଶରେ କୃପଙ୍କର ରଥେ ନେଇ ପିଟି
ମନ୍ଦର ଗିରି ଯେସନେ ବଜ୍ରଘାତେ ଫାଟି।
ଦେଖି କୃପାଚାର୍ଯ୍ୟ ଡେଇଁ ପଡ଼ିଲେ ବହନ
ସାରଥିର ମୁଣ୍ଡ ମୋଡ଼ି ଫେରେ ଭୀମସେନ।
ରଣଗୋଳରେ ଧନ୍ଦୋଳ କରେ ମହାବୀର
କାଳାନଳ ମୂର୍ତ୍ତି ଦେଖି ଭାଳେ କୁରୁବୀର।
ପବନ ନନ୍ଦନ ଯୁଦ୍ଧେ ମହାବଳୀୟାର
ଲେଉଟିଣ କୁରୁବୀର ବେଢ଼ିଲେ ସତ୍ୱର।
କେହୁ ଶତେ କେହୁ ସସ୍ରେ ଲକ୍ଷେ ବାଣମାରି
ଏକା ଭୀମକୁ ବିନ୍ଧନ୍ତି ସର୍ବେ କୋପ କରି।

ତହୁଁ ଘୋର ଶବ୍ଦ ଶୁଣି ଧାମଇଁ ଦୁର୍ଦ୍ଧକ୍ଷ
ଭୀମସେନ ତୁଲେ ଯୁଦ୍ଧ କରଇ ସୁଦକ୍ଷ ।
ଚଉଷଠି ଭାର ଗଦା ଘେନି ବେନି କରେ
ରଣରଙ୍ଗରେ ମଚ୍ଛିଲା ଥାଟର ଭିତରେ ।
ଭୀମସେନ ଦୁର୍ଦ୍ଧକ୍ଷର ହୋଇଲାକ ସଖା
କୌରବ ସୈନ୍ୟକୁ ମନେ ନ କରିଲେ ଶଙ୍କା ।
ଏକଲକ୍ଷ ଯୋଦ୍ଧା ଘେନି ଅଳମ୍ବୁ ରାକ୍ଷସ
ସବୁରି ବ୍ୟାଘ୍ର ବାହନ ଖାଙ୍କର ଯେ କେଶ ।
ବ୍ୟାଘ୍ରଚର୍ମ କରିଛନ୍ତି କାଛଟି ଅଣ୍ଟାରେ
ବାମ କରରେ ମୁଷଳ କାତି ଦକ୍ଷକରେ ।
କଳିଙ୍ଗସେନ ପରାୟେ ଯୁଝିଣ ମାରୁତି
ଦୁର୍ଦ୍ଧକ୍ଷକୁ ସଙ୍ଗେ ଘେନି ଧାଇଁଲେ ତଡ଼ତି ।
ବେନି ଅୟୁତ ଯୋଦ୍ଧାକୁ ଘେନି ଦୁଃଶାସନ
ଦୁର୍ଦ୍ଧକ୍ଷର ଆଗେ ମିଳି କରିଲା ସଂଗ୍ରାମ ।
ବିକର୍ଣ୍ଣ ସାରଥି ବୀର ଦୁଃଶାକୁ କହଇ
ଦେଖ ଦେଖ ଭ୍ରାତ ତବ ଦୁର୍ଦ୍ଧକ୍ଷଟି ଏହି ।
ସହସ୍ର ସହସ୍ର ଯୋଦ୍ଧା ଏକା ଯୋଦ୍ଧା ମାରେ
କବନ୍ଧ ନାଚନ୍ତି ରକ୍ତ ମାଂସ କର୍ଦ୍ଦମରେ ।
ଦୁଃଶା ବୋଲେ ଆଜି ମୋର ଅଟେ ଶୁଭଦିନ
ତାହାକୁ ଭେଟିଲେ ଯିବ ଦୁର୍ଯ୍ୟୋଧନ ମାନ ।
ଶରଣ ପଶିଲା ଫଳ ପାଉ ମୋର ଭାଇ
ଜ୍ୟନ୍ତା ଧରିନେବି ପ୍ରାଣେ ନ ମାରିଣ ମୁହିଁ ।
ଦୁଃଶା ୟା କହୁ ଦୁର୍ଦ୍ଧକ୍ଷ ମହାରାଗେ ଉଠି
ଯୋଦ୍ଧାମାନଙ୍କ ଉପରେ ପ୍ରହାରିଲା ଯଷ୍ଟି ।
ବଜ୍ର ମୁଦୁଗର କରେ ଧରି ଗଲା ଧାଇଁ
ଦୁଃଶାର ସୈନ୍ୟମାନଙ୍କୁ ପ୍ରହାରିଲା ନେଇ ।
ରାହୁ ଦେଖିଣ ଯେସନେ ପଳାନ୍ତି ବୃନ୍ଦାର୍କେ
ସେହିରୂପେ ପଳାଇଲେ ଯୋଦ୍ଧାଏ ସତର୍କେ ।
ରେରେକାର କରି ରାଗେ ଦୁର୍ଦ୍ଧକ୍ଷ ଯେ ଉଠି
ବଜ୍ର ମୁଦୁଗର ନେଇ ଦୁଃଶାରଥେ ପିଟି ।
ଦୁର୍ଦ୍ଧକ୍ଷର ଘାଏ ରଥ ପଡ଼ିଲାକ ଭାଜି
ଗାନ୍ଧାରୀ କନିଷ୍ଠ ପୁତ୍ର ଧାଏଁ ଗଲଗାଜି ।
ଡାହାଣ କରରେ ରଥ ଧରିଣ ବୁଲାଇ
ଅନ୍ୟ ଏକ ରଥପରେ ପିଟିଲାକ ନେଇ ।
ଏପରି ଦୁର୍ଦ୍ଧକ୍ଷ ଯୁଦ୍ଧ ବେନି ଦଣ୍ଡ କଲା
ତିନିଶତ ରଥୀଙ୍କୁ ଯେ ଭୂମିରେ ଫିଙ୍ଗିଲା ।
ଶୁଣ ଚଇତନ ଧର୍ମ ନନ୍ଦନର କଥା
ପାଣ୍ଡବେ ଯେ କୃଷ୍ଣ ପରସାଦେ ବଳବନ୍ତା ।
ବଡ଼ ବଡ଼ ସମରକୁ ନ କରନ୍ତି ଶଙ୍କା
ରାମାନୁଗ୍ରହେ ଧ୍ୱଂସିଲା ହନୁ ଯେହ୍ନେ ଲଙ୍କା ।

ଯୋଦ୍ଧାମାନେ ବେଢ଼ି କରି ଶର ପ୍ରହାରନ୍ତି
ଦୁର୍ଦ୍ଧକ୍ଷ ପ୍ରହାର କେହି ସହି ନ ପାରନ୍ତି ।
ଏକ ଏକ ପ୍ରହାରକେ ଗଜ ଅଶ୍ୱ ଲୋଟି
ସମରେ ପଡ଼ିଲେ ଯୋଦ୍ଧା ଯୁଦ୍ଧସ୍ଥାନେ ଘୋଟି ।
ସମରରେ ଯୋଦ୍ଧାମାନେ ପାଇ ବଡ଼ ଦୁଃଖ
ପଳାଇଲେ ଅପସରି ହୋଇଣ ନିରେଖ ।
ଏଥୁଅନ୍ତେ ଆନ କଥା ଶୁଣ ହେ ରାଜନ
ବିଧାତାର ଘଟସୂତ୍ର କେ କରିବ ଆନ ।
ତେଣେ ଶଲ୍ୟ ରଥଭଗ୍ନ ଦେଖି ଦୁଃଶାସନ
ପାଞ୍ଚକୋଟି ଯୋଦ୍ଧା ଘେନି ମିଳିଲା ରାଜନ ।
ଦୁର୍ଦ୍ଧକ୍ଷକୁ ବୋଲଇ ଯେ ଦୁଃଶାସନ ରୋଷି
ଆରେ ବାବୁ କିପାଇଁ ତୁ ହେଲୁ ଯେ ନିରାଶି ।
ପାଣ୍ଡବେ ଯେ ଗୋଳକୁଣ୍ଡା ପୃଥ୍ୱୀରେ କହନ୍ତି
ବିଶେଷେ ଭିକ୍ଷାଶୀ ବନବାସୀ ସେ ଅଟନ୍ତି ।
କଳ୍ପତରୁ ଛାଡ଼ି ଆଶା କଲୁରେ ଏରଣ୍ଡ
ପାଣ୍ଡବଙ୍କୁ ଦେଖନ୍ତେ ମୁଁ କାଟିବି ତୋ ମୁଣ୍ଡ ।
ଦୁର୍ଦ୍ଧକ୍ଷ ବୋଇଲା ତୁମ୍ଭ ମରଣ ନିକଟ
ଅଳ୍ପଦିନ ମାତ୍ର ରହ ହେବ ଯମ ଭେଟ ।
ପଞ୍ଚ ପାଣ୍ଡବ ଆବର ଜଗନ୍ନାଥ ଥିଲେ
ମୋତେ କେ ଜିଣିବ ତୁମ୍ଭମାନଙ୍କର ବଳେ ।
ତୁମ୍ଭେମାନେ ଲକ୍ଷଯୋଦ୍ଧା ମୁହିଁ ତ ଏକାକୀ
କେଯୁଦ୍ଧ କରିବ ଆସୁ ମୋର ତୁଲେ ଦେଖି ।
ଆରେ ଦୁଃଶାସନ ତୋର ପ୍ରତିଜ୍ଞା ଯେ ସାଧୁ
ପରାକ୍ରମେ ଶର ତୁହି କିପାଇଁ ନ ବିନ୍ଧୁ ।
ଶୁଣିକରି ଦୁଃଶାସନ ଗର୍ଜି ମହାରାଗେ
ଜ୍ୱାଳାବଳି ନାରାଚକୁ ବିନ୍ଧେ ଅତି ବେଗେ ।
ଦୁଃଶାସନର ନାରାଚେ ଦୁର୍ଦ୍ଧକ୍ଷ ପାଳଟି
ଗଦାବରକୁ ବୁଲାଇ ତା ରଥରେ ପିଟି ।
ଭାଜିଣ ତାହାର ରଥ ହୋଇଗଲା ଚୁନା
ଭୂମିରେ ପତିତ ହେଲା ଦୁଃଶାସନ ଜେନା ।
ଗଦା ବିଘାତରେ ଦୁଃଶା ହୋଇଗଲା ମୂର୍ଚ୍ଛା
ପାଶେ ମିଳିଣ ଦୁର୍ଦ୍ଧକ୍ଷ ତାକୁ କରେ ପୁଚ୍ଛା ।
ଉଠ ଉଠ ସ୍ୱାମୀ ବୋଲି ଧରେ କୋଳକରି
ଦୁର୍ଜ୍ଜୟକୁ ବୋଲେ ଘେନିଯାଅ ଅପସରି ।
ତଦନ୍ତରେ ଦୁଃଶାସନ ସାଷ୍ଟାମ ହୁଅନ୍ତେ
ଦୁଃଶାସନକୁ ଦୁର୍ଦ୍ଧକ୍ଷ କହଇ ଏମନ୍ତେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଯୁଦ୍ଧ କରୁଥିଲେ
ଆପଦ କାଳରେ ତୋତେ ରଖି ନ ପାରିଲେ ।
ଆହେ ଭାଇ ଏବେ ମୁହିଁ କହୁଅଛି ଏତେ
ଆଉବେଳେ ନ ପଶିବ ଯୁଦ୍ଧେ କଦାଚିତେ ।

ଦ୍ରୌପଦୀଙ୍କୁ ଝିଙ୍କାସିଲ ତୁମ୍ଭେ ସଭାତଳେ
ଭୀମସେନ ଲେଖିଛନ୍ତି ତାହା ବକ୍ଷସ୍ଥଳେ।
ତେରବର୍ଷ ସତାନବେ ଦିନ ଗତ ହେଲା
ପ୍ରତିଜ୍ଞା କରିଣ ସତୀ କେଶ ନ ବାନ୍ଧିଲା।
ଉପାଡ଼ିଣ ଦକ୍ଷଭୁଜ ଯୁଦ୍ଧେ ଭୀମ ତୋର
ସେ ରୁଧିରେ ମହାସତୀ ପଖାଳିବେ ଶିର।
ତେବେ ସେ କେଶ ବାନ୍ଧିବେ ଦ୍ରୁପଦରକନ୍ୟା
ଏହି ପ୍ରକାରେ ପ୍ରତିଜ୍ଞା କରୁଅଛି ଭୀମା।
ଭୀମସେନ ଅଛନ୍ତି ଯେ ଅଳମ୍ବୁଷ ଯୁଦ୍ଧେ
ଜାଣିଲେ ମାରିବେ ତୋତେ ଏହି ରଣ ମଧ୍ୟେ
ଦିନାକେତେ ବର୍ତ୍ତିଯାଅ ଆହେ ଦୁଃଶାସନ
ସଂଗ୍ରାମରେ ନ ରହିଣ ପଳାଅ ବହନ।
ଏହା ଶୁଣି ଦୁଃଶାସନ ବସିଲାକ ରଥେ
ବାହୁଡ଼ିଲେ କୁରୁସୈନ୍ୟ ଦୁଃଶାର ସହିତେ।
ଦୁଃଶାସନ ରଣେ ଭଙ୍ଗ ଦେଖିଣ ବିକର୍ଣ୍ଣ
ବେନିଲକ୍ଷ ଯୋଦ୍ଧା ଘେନି ଧାଇଁଲେ ବହନ।
ମାର ମାର ବୋଲି ଶବ୍ଦ ଶୁଭେ ସେ ଦିଗରେ
ପୃଥିବୀ କମ୍ପିତ ହେଲା ତାଙ୍କ ପାଦଭରେ।
ଦୁର୍ଦ୍ଧକ୍ଷକୁ ଆବୋରିଲା ତା ପାଶକୁ ଆସି
ନାରାଚମାନ ବିନ୍ଧିଲେ ତାହାକୁ ଆକର୍ଷି।
ଶୁଣ ଆହେ ଚଇତନ ସ୍ଥିରକରି ମନ
ଅଳମ୍ବୁଷ ତୁଲେ ତେଣେ ଯୁଦ୍ଧକଲେ ଭୀମ।
ସମରେ ପ୍ରତିଜ୍ଞା କରେ ଭୀମସେନ ରୋଷେ
ଏକଗୋଟି ବ୍ୟାଘ୍ର ଯେହ୍ନେ ଛାଗପଲ ଧ୍ୱଂସେ।
ଭୀମ ଅଳମ୍ବୁଷ ଯୁଦ୍ଧ ଅଟେ ଅନୁପମ
ଏହା ଦେଖିବାକୁ କେହି ହୋଇବ ସକ୍ଷମ।
କୌରବ ସୈନ୍ୟଙ୍କୁ ଭୀମ ପ୍ରହାର କରନ୍ତେ
ଅଳମ୍ବୁଷ ଆବୋରିଲା ଆସିଣ ଅଗ୍ରତେ।
ଏକ ଏକ ରଥେ ଯୋଚା ଅଷ୍ଟ ଅଷ୍ଟ ବ୍ୟାଘ୍ର
ଏସନକ ବିପରୀତ ଦେଖି ଭୀମ ଆଗ।
ସମରରେ ବୃକୋଦର ନିର୍ଭୟ ଅଟଇ
କଣୟଗିରି ସଦୃଶ କାୟା ବିକାଶଇ।
ଚନ୍ଦ୍ର କିରଣ ପରାୟେ ଦିଶେ ତାର ଗଦା
ଯମଦେବ ଜିଣିବାକୁ ଯାହାର ଆସର୍ଦ୍ଧା।
ବକପଲ ଦେଖି ଯେହ୍ନେ ଧାମେ ଶ୍ୱେନପକ୍ଷୀ
ଭୀମା ଧାମେ ତେସନେକ ଦୈତ୍ୟବଳ ଦେଖି
ଭୀମସେନକୁ ଦେଖିଣ ଦୁରାନ୍ତକ ସୈନ୍ୟେ
ଶତେକପୁର କରିଣ ବେଢ଼ିଲେ ତକ୍ଷଣ।
ଲୌହଗଦା ଅଛି ହସ୍ତେ ଶତ ଶତ ଭାର
ଦଇତ୍ୟେ ଦିଶୁଅଛନ୍ତି ଯେହ୍ନେ ଗିରିବର।

ଏକା ପାଣ୍ଡବକୁ ତିନିଅୟୁତେ ଯେ ଯୋଦ୍ଧା
ଶତ ଶତ ନାରାଚକୁ କରନ୍ତି ସେ ଭେଦା।
କକଡ଼ା ମାସରେ ଯେହ୍ନେ ହୁଏ ଜଳବୃଷ୍ଟି
ସେପରି ବାଣ ବିନ୍ଧନ୍ତେ ଅନ୍ଧକାର ଘୋଟି।
ଅସୁର ପ୍ରହାର ଦେଖି ବୀରବର ଭୀମ
ବେଳକୁବେଳ ମନରେ କରି ଗୁରୁତମ।
ପୁଣି ଗଦା ମୁଦୁଗର କୁନ୍ତ ଶର ଯଷ୍ଟି
ଘେନି ସକଳ ଅସୁର ଏକମୁଖେ ଉଠି।
ପ୍ରହାରନ୍ତି ନେଇ ତାହା ଭୀମସେନ ପରେ
ଭୀମ ଛିଡ଼ା ହୋଇଅଛି ଭୀତି ନାହିଁ କାରେ।
ଏପରି ଦେଖି ମାରୁତି ବାମଅଙ୍ଗ ପାତି
ପଡ଼ିଣ ଚୂର୍ଣ୍ଣ ହୋଇଲା ଗଦା ଯେ ଶକତି।
ନାରାଚ ଗୁରୁଜ କୁନ୍ତ ଛେଲ ମୁଦୁଗର
ସମସ୍ତ ଚୂର୍ଣ୍ଣ ହୋଇଲା ମାରୁତି ଅଙ୍ଗର।
ଗର୍ଜ୍ଜନ କରି ଯୋଦ୍ଧାଏ ଯେତେ କୁନ୍ତ ଯଷ୍ଟି
ମାରନ୍ତି ଉପୁଡ଼ି ପଡ଼େ ତା ଦେହେ ନ ଫୁଟି।
ଲେଉଟି ଧାମଇଁ ସେହି ପାଣ୍ଡବ ସୁନ୍ଦର
ଗଦା ଘେନି ପ୍ରହାରିଲା ଦୈତ୍ୟଙ୍କ ଉପର।
ଭୀମର ପ୍ରହାର କେହି ମେଣ୍ଟି ନ ପାରିଲେ
ରଥୀ ଯୋଦ୍ଧା ପଦାତିଏ ଚୂର୍ଣ୍ଣ ହୋଇଗଲେ।
ରକତରେ ବିଲେପିତ ଭୀମସେନ ଅଙ୍ଗ
ହିରଣ୍ୟ ବିଦାରି ଯେହ୍ନେ ଦିଶନ୍ତି ନୃସିଂହ।
ଅସୁରମାନେ ଶଙ୍କିଲେ ଭୀମରୂପ ଦେଖି
ସମସ୍ତେ ପଳାଇ ଗଲେ ସମର ଉପେକ୍ଷି।
ରଥ ଗଜ ଅଶ୍ୱ ତେଜି ଦୈତ୍ୟଙ୍କର ବଳେ
ପଳାଇଲେ ସର୍ବେ କେଶବାସ ଅସମ୍ଭାଳେ।
ଭାଳିଲେ ସୈନ୍ୟେ ଲେଉଟି ପଛେ ନ ଚାହାନ୍ତି
ଗଦା ଘେନି ଯମପ୍ରାୟେ ଧାମଇଁ ମାରୁତି।
ସଇନ୍ୟଗଣ ବିନାଶ ଦେଖି ଅଳମ୍ବୁଷ
ପଞ୍ଚଦଶ ଯୋଦ୍ଧା ତୁଲେ ରହେ ଭୀମପାଶ।
ଦନ୍ତବକ୍ର ଶୂରଚକ୍ର ଅଳାୟୁଧ ସୁତ
ଏକେ ଏକେ ଶୂର ନାଶି ପାରନ୍ତି ଦୈବତ।
କୁଠାର ଆୟୁଧ ସେହୁ ଧରିଛନ୍ତି କରେ
ଧାଡିକାରେ ଫିଟିଲେ ସେ ଭୀମର ଉପରେ।
ତହୁଁ ଭୀମ ହସେ ଦେଖି ତାହାଙ୍କ ବିଘାତ
ଆକର୍ଷି ଧଇଲା ଯାଇ ଅଳମ୍ବୁଷ ରଥ।
ଅନ୍ତରୀକ୍ଷେ ବୁଲାଇଲା ଟେକି ରଥଦଣ୍ଡ
ଅଳାୟୁଧ ରଥେ ନେଇ ପିଟିଲା ପ୍ରଚଣ୍ଡ।
ସେ ଘାତରେ ଦୁଇରଥ ଚୂର୍ଣ୍ଣ ହୋଇଗଲେ
ଅଳାମ୍ବୁଷ ଅଳାୟୁଧ ପାଦଗତି ହେଲେ।

ଲୁହାର ଶକତି ଘେନି କୋପରେ ଧାଇଁଲେ
ଭୀମସେନର ଉପରେ ନିଠାଇ ପିଟିଲେ।
ଦେଖି ଭୀମସେନ ବୀର ପାତେ ବାମଅଙ୍ଗ
ବେନି ଶକ୍ତି ପଡ଼ି ତହିଁ ହୋଇଗଲା ଭଙ୍ଗ।
ଦେଖି ବିରସ ହୋଇଲେ ପିତାପୁତ୍ର ବେନି
ପଛରୁ ଗୋଡ଼ାଇ ପିଟେ ତାହାଙ୍କୁ ପାବନୀ।
ଅଳମ୍ଭୁଷ ଜ୍ୟେଷ୍ଠପୁତ୍ର ଦନ୍ତବକ୍ର ନାମ
ଗଦାଘାତେ ଆକାଶକୁ ଉଡ଼ାଇଲେ ଭୀମ।
ପୁଣି ଭୀମ ପ୍ରହାରିଲେ ଗଦାବର ଟେକି
ସେଆଘାତେ ଅଳାୟୁଧ ଦେହହେଲା ଧୂଳି।
ପଳାଇଲା ଅଳମ୍ଭୁଷ ଆଉ ପୁତ୍ର ଘେନି
ଗୋଡ଼ାଇ ଭୀମ ମାଇଲେ ତାର ବହୁ ସୈନି।
ବାହୁନାଇ ଦଣ୍ଡଭଗ୍ନ କରି ବୃକୋଦର
ଆସିଣ ମିଳିଲା ବେଗେ ଦୁର୍ଦ୍ଧକ୍ଷ ପାଶର।
ଭୀମ ଦୁର୍ଦ୍ଧକ୍ଷ ଏ ଦୁହେଁ ଏକସଙ୍ଗ ହେଲେ
କେତୁ ମଙ୍ଗଳ ଗ୍ରହର ପରାୟେ ଦିଶିଲେ।
ଶଲ୍ୟ ସୋମଦତ୍ତ କର୍ଣ୍ଣ ଅଶ୍ୱତ୍ଥାମା କୃପ
କୋଣକେ ରହିଲେ ଦେଖି ଦୁହିଙ୍କର ରୂପ।
ଯୁଦ୍ଧରେ ସୁହୃଦପଣ ଏ ଦୁହିଙ୍କ ନାହିଁ
ଶରଣ ବୋଇଲେ ରକ୍ଷା ନ କରନ୍ତି ସେହି।
ଅଧର୍ମ ଯୁଦ୍ଧ ଦେଖିଣ ଯୋଦ୍ଧା ଆଡ଼ ହେଲେ
ଛାମୁରେ ରହିବାକୁ କେ ସାହସ ନ କଲେ।
ଭୀମ ଦୁର୍ଦ୍ଧକ୍ଷ ଏ ଦୁହେଁ ଆସୁ ଆସୁ ଫେରି
ଯେହ୍ନୁ ହାବୁଡ଼େ ପଡ଼ଇ ନ ଯାଏ ଉବୁରି।
ରଣଗୋଳ ଧନ୍ଦୋଳେ ସେ ଅଟନ୍ତି ଶକତା
ରଣେପଶିଲେ ତାଙ୍କର ନଥାଏ ଯେଚିନ୍ତା।
ଭୂରିଶ୍ରବା ଆଗେ ଉଭା ଅଛନ୍ତି ଯୁଧିଷ୍ଠି
ଭୀମ ଦୁର୍ଦ୍ଧକ୍ଷ ଏ ଦୁହେଁ ଯାଇ ତାଙ୍କୁ ଭେଟି।
ଯୁଧିଷ୍ଠିଙ୍କୁ ଗାନ୍ଧାରୀର ପୁତ୍ର କରି ପଛ
ଭୂରିଶ୍ରବା ସଙ୍ଗେ ଭେଟ ହୁଅନ୍ତେ ପ୍ରତ୍ୟକ୍ଷ।
ରାହୁ ଯେହ୍ନେ ଚନ୍ଦ୍ରମାକୁ ଯାଇ ଗରାସଇ
ସେପରି ଭୂରିଶ୍ରବାକୁ ଓଗାଳିଲା ଯାଇ।
ସାଧୁରେ ନନ୍ଦନ ତୋର ଧନ୍ୟ ପିତାମାତା
ଜାଣିଲୁ ଧୃତରାଷ୍ଟ୍ରକୁ ତୁହି ଉଦ୍ଧାରନ୍ତା।
ପ୍ରଶଂସା କଲେକ ଏହା ଦୁର୍ଦ୍ଧକ୍ଷକୁ ଦେଖି
ବିନ୍ଧିଲେ ନାରାଚ ଭୂରି ଗୌରବ ଉପେକ୍ଷି।
ମେଣ୍ଟିଲା ଭୂରିଶ୍ରବାଙ୍କ ନାରାଚ ପଡ଼ନ୍ତେ
ପୁଣି ବିନ୍ଧିଲେକ ଭୂରି ନାରାଚ ସେ ଶତେ।
ଗାନ୍ଧାରୀ ପୁତ୍ର ବୁଲାଇ ଦୁଇ ଗଦାବର
ଭୂରିଙ୍କ ନାରାଚମାନ କରିଦେଲା ଚୂର।

ବହୁଶର ଭୂରିଶ୍ରବା ତାହାକୁ ମାଇଲେ
ପ୍ରତି ଅସ୍ତ୍ରରେ ଦୁର୍ଦ୍ଧକ୍ଷ ସକଳ ନାଶିଲେ।
ଦୁର୍ଦ୍ଧକ୍ଷକୁ କେଉଁମତେ ଜିଣି ନ ପାରିଲେ
ଶର ବିନ୍ଧି ବିନ୍ଧି ଯହୁଁ ବିମୁଖ ହୋଇଲେ।
ସସ୍ରଶର ଶର କାଢ଼ି ବସାଇଲେ ଚାପେ
ବିନ୍ଧନ୍ତେ ସେଗଳିଗଲା ରୋମେ ରୋମେ ଦର୍ପେ।
ଯେସନେକ ସର୍ପମାନେ ପଶନ୍ତି ବିବରେ
ସେପରି ଶର ଗଳିଲା ଦୁର୍ଦ୍ଧକ୍ଷ ଦେହରେ।
ରଣେ ଅସାଷ୍ଟମ ହେଲା ଗାନ୍ଧାରୀର ବଳା
ଧରିଥିବା ଧନୁ ହସ୍ତୁ ତଳେ ପଡ଼ିଗଲା।
ତାହା ଦେଖି ଭୁରିଶ୍ରବା ରଥରୁ ଡ଼େଇଁଲେ
ଆକର୍ଷିଣ ଗାନ୍ଧାରୀର ତନୟେ ଧରିଲେ।
ପକାଇଲେ ନେଇ ତାକୁ ଆପଣାର ରଥେ
ବିଚାରିଲେ ବଂଶଦ୍ରୋହ କରିବି କେମନ୍ତେ।
ଦୁର୍ଦ୍ଧକ୍ଷକୁ ନେଲାବେଳେ ଯୁଧିଷ୍ଠି ଦେଖିଲେ
ମୋ ଭାଇକୁ ଭୁରିଶ୍ରବା ରଥେ ଘେନିଗଲେ।
ଏହା କହି ଡ଼ାକଦେଲେ ଧାଇଁଆସ ଭୀମ
ଦୁର୍ଦ୍ଧକ୍ଷକୁ ବନ୍ଦି କଲେ ଗଲା ଆମ୍ଭ ଧର୍ମ।
ଶେଷେଭାଇ ତାଜୀବନ ଦେଲା ଯେ ଆମ୍ଭଙ୍କୁ
ମୋହର ଦେଖନ୍ତେ ଧରିନେଲେ ଦୁର୍ଦ୍ଧକ୍ଷକୁ।
ଯୁଧିଷ୍ଠିର ଦେବ ଯହୁଁ କଲେ ଘୋରଧ୍ୱନି
ସମରେ ଥାଇଣ ତାହା ଶୁଣିଲେ ପାବନି।
ଭରିଶ୍ରବା ମାର ବୋଲି ଶୁଭିଲାକ ଧ୍ୱନି
ତହୁଁ ଉଗାଳିଲେ ତାଙ୍କୁ ଯୁଧିଷ୍ଠିର ସୈନି।
ଭୀମସେନ ସହିତରେ କୁମର ଶିଖଣ୍ଡୀ
କୁବେରର ରଥପରି ଯାହାରଥ ମଣ୍ଡି।
ପାଣ୍ଡବଙ୍କ ବଳ ଯହୁଁ ଚଉପାଶେ ଘୋଟି
ଦୁର୍ଦ୍ଧକ୍ଷକୁ ଘେନି ଭୁରି ଅଇଲେ ଲେଉଟି।
ଶିଖଣ୍ଡୀ ପଶଇ ଯୁଦ୍ଧେ ସଇନ୍ୟ ମଛିଣ
ପ୍ରବେଶିଲେ ଭିରିଶ୍ରବା ପଛେ ଭୀମସେନ।
ରେ ରେକାର ଶବ୍ଦ କରି ପାଣ୍ଡବ ସୁନ୍ଦର
ଭୁରିଶ୍ରବା ରଥେ ଗଦା କରିଲେ ପ୍ରହାର।
ମହାକୋପେ ଭୀମ ଯହୁଁ ଗଦା ପ୍ରହାରିଲା
ଭୁରିଶ୍ରବା ରଥ ଭାଙ୍ଗି ଶତଖଣ୍ଡ ହେଲା।
ଗଦା ରଥେ ବାଜି ବାଜେ ଭୁରିଶ୍ରବାପରେ
ଅଜ୍ଞାନ ହୋଇ ପଡ଼ିଲେ ଭୂମିର ଉପରେ।
ଜ୍ଞାନ ପାଇ ଭୁରିଶ୍ରବା ଆରୋହିଣ ନାଗ
ଥାଟ ମଧ୍ୟରେ ପଶିଲେ ଯାଇକରି ବେଗ।
ଦୁର୍ଦ୍ଧକ୍ଷକୁ ତୋଳି ରଥେ ବସାଇ ଶିଖଣ୍ଡୀ
ବାମକରେ ଅଛି ତାର ଚକ୍ର ଯେ ଭୂଷଣ୍ଡୀ।

ଦୁର୍ଦ୍ଧକ୍ଷକୁ ଘେନି ଭୀମ ଶିଖଣ୍ଡୀ ଏ ବେନି
ଯୁଧିଷ୍ଠିର ପାଦତଳେ ଯାଇଣ ପ୍ରଣମି ।
ଏପରି ଚରିତମାନ ଭୀଷ୍ମ ପାର୍ଥ ଦେଖି
ଦୁହେଁ ଶର ପ୍ରହାରନ୍ତେ ଉପ୍ରୋଧ ଉପେକ୍ଷି ।
ଭୀଷ୍ମ ଆଉ ଅର୍ଜ୍ଜୁନର ହେଲା ମହାଯୁଦ୍ଧ
ଦୁହିଁଙ୍କର ଶରେ ହେଲା ଆକାଶ ନିରୋଧ ।
ଶର ବୃଷ୍ଟି ହେତୁ ଧ୍ୱନି ଗହଳ ହୋଇଲେ
ଦଶଦିଗ ଅନ୍ଧକାର ପରିପୂର୍ଣ୍ଣ ହେଲା ।
ଅସ୍ତ୍ରେ ଶସ୍ତ୍ର ବାଜିକରି ହେଲା ପରିତାଳ
ତେଣୁକରି ତହିଁରୁ ଯେ ଉଠିଲା ଅନଳ ।
ପରସ୍ପରେ ଦୁଇଜଣ ହେଲେ ବିନ୍ଧାବିନ୍ଧି
ନାରାଚ ନରାଚ ପଡ଼ି ହୁଏ ଛନ୍ଦାଛନ୍ଦି ।
ସାମାନ୍ୟ ନାରଚେ ଭୀଷ୍ମ ନ ପରନ୍ତି ଜିଣି
ସହସ୍ରଧାର ନାରାଚ ବିନ୍ଧିଲେ ତକ୍ଷଣି ।
ଗଙ୍ଗାପୁତ୍ର ଆକର୍ଷିଣ ପାର୍ଥକୁ ବିନ୍ଧିଲେ
ଏହା ପ୍ରତିକାର କର ଶ୍ରୀକୃଷ୍ଣ ବୋଇଲେ ।
କୃଷ୍ଣ ବଚନରେ ପାର୍ଥ ପ୍ରତିଶରେ ବିନ୍ଧି
ଭୀଷ୍ମଙ୍କର ନାରାଚକୁ ପକାଇଲେ ଛେଦି ।
ତହିଁ ପୁଣି ଗଙ୍ଗାପୁତ୍ର କୁହୁବାଣ ପେଶି
ଘୋଟିଗଲା ନାରାଚ ଯେ ଆକାଶ ନ ଦିଶି ।
ଅର୍ଜ୍ଜୁନଙ୍କର ଅଗ୍ରତେ ଶ୍ରୀକୃଷ୍ଣ ବୋଇଲେ
ଦେଖ ଅର୍ଜ୍ଜୁନ କପଟ ଯୁଦ୍ଧ ଭୀଷ୍ମ କଲେ ।
କୃଷ୍ଣ ବାକ୍ୟେ ଦରହାସେ ବୀର ସବ୍ୟସାଚୀ
ସୂର୍ଯ୍ୟାବର୍ତ୍ତ ଶର ବିନ୍ଧେ ଗୁଣକୁ ଆମଞ୍ଚି ।
ଆଦିତ୍ୟର ତେଜ ଯହୁଁ ଆକାଶେ ଘୋଟିଲା
କୁହୁଡ଼ି ସକଳ ବେଗେ ନାଶ ହୋଇଗଲା ।
ପୁଣି ଗାଙ୍ଗେୟ ପନ୍ନଗ ନାରାଚ ପେଷିଲେ
ଗର୍ଜ୍ଜିକରି ସର୍ପମାନେ ଫଣା ଟେକିଗଲେ ।
ସର୍ପମାନଙ୍କୁ ଦେଖିଣ ପାର୍ଥ ମହାବଳୀ
ଖଗବର ନାରାଚକୁ ବିନ୍ଧେ ବେଗେ ତୋଳି ।
ବୈନତେୟ ତେଜ ଯହୁଁ ଯୁଦ୍ଧେ ବିକାଶିଲା
ସର୍ପଶର ତାକୁ ଦେଖି ମୃତବତ ହେଲା ।
ଏହିପରି ଘୋର ଯୁଦ୍ଧ ହେଲା ବେଳୁବେଳ
ତୃତୀୟ ପ୍ରହର ଆସି ହୋଇଲାକ ବେଳ ।
ମହା ଘୋରତର ରଣ ଯେତେବେଳେ ହେଲା
ପଶ୍ଚିମରେ ପ୍ରବେଶିଲେ କଶ୍ୟପର ବଳା ।
ପାଣ୍ଡବଙ୍କର ସମ୍ମୁଖେ ହେଲେ ମାର୍ତ୍ତଣ୍ଡ
ଦିବା ଭୋଗ ହେଲା ଆସି ଚତୁର୍ଦ୍ଦଶ ଦଣ୍ଡ ।
ପଣ୍ଡୁପୁତ୍ର ମୁଖ କଲେ ସନ୍ଧ୍ୟାପରିଯନ୍ତେ
ମୁଖେ ତେଜ ଲାଗେ ସୂର୍ଯ୍ୟ ପଶ୍ଚିମେ ରହନ୍ତେ ।
ଅନୁକ୍ଷଣ ବାଣ ବିନ୍ଧୁ ଗଙ୍ଗାଙ୍କର ସୁତ
ଝାଳେ ଜର ଜର ହେଲା ବୀରବର ପାର୍ଥ ।
ଆଦିତ୍ୟ ତେଜ ସମାନ ଶସ୍ତ୍ର ସବୁ ଜଳି
ପାର୍ଥ କପାଳୁ ତ୍ରିପଣ୍ଡ ଝାଳ ପଡ଼େ ଗଳି ।
ବେଳକୁ ବେଳ ହୋଇଲା ଘୋରତର ରଣ
ଚାରି ଶର ସାରଥିକି ବିନ୍ଧେ ଭୀଷ୍ମରାଣ ।
ନନ୍ଦିଘୋଷ ରଥପରେ ବିଜେ ହନୁମନ୍ତ
ତାକୁ ସହସ୍ର ନାରାଚ ବିନ୍ଧେ ଗଙ୍ଗାସୁତ ।
ରଥର ଚାରି ଅଶ୍ୱକୁ ଚାରିସସ୍ର ଶର
ବେନି ସହସ୍ର ବିନ୍ଧିଲେ ପାର୍ଥର ଉପର ।
ତହିଁକି ପ୍ରତି ଉତ୍ତର ଦେଲେ ବନମାଳୀ
ପ୍ରମାଦ ପଡ଼ିଲା ତୁ କି ପାରିବୁ ସମ୍ଭାଳି ।
ସବୁକୁହିଁ ଉପରୋଧ ଛାଡ଼ିଲେ ଗାଙ୍ଗେୟ
ବେଗହୋଇ ନିବାରଣ କର ଧନଞ୍ଜୟ ।
ପାର୍ଥବୋଲେ ଅଛି ଯେତେବାଣ ସେବିନ୍ଧିବେ
କିଞ୍ଚିତ ନାରାଚେ ତାହା କାଟିବଇଁ ସର୍ବେ ।
ଏଛାର କଥାକୁ ପ୍ରଭୁ କିପାଁ କର ଭୀତି
ଦିବ୍ୟ ଅସ୍ତ୍ରେ ଭୀଷ୍ମ ଶର ଛେଦିବି ବିକୋଟି ।
ଅପାର ତିରଣ ଯହିଁ ଥାଏ ଜମାହୋଇ
କିଞ୍ଚିତ ଅନଳେ ତାହା ଜଳି କି ନ ଯାଇ ।
ବହୁଶର ନିକ୍ଷେପିଲେ ଭୀଷ୍ମ ହୋଇ ରୋଷି
କିଞ୍ଚିତ ନରାଚେ ତାହା ଅର୍ଜ୍ଜୁନ ବିନାଶି ।
ପୁଣି ଅଇନ୍ଦ୍ରବ ଶର ଅର୍ଜ୍ଜୁନ ବିନ୍ଧିଲେ
କଷୁଣୀ ଅଙ୍ଗୁଷ୍ଠି ଘେନି ଝାଳ ପୋଛି ଦେଲେ ।
ଏତେ ମାତ୍ର ଛିଦ୍ର ପାଇ ଭୀଷ୍ମ ଶରଶନ୍ଧି
ଧାଡିକାରେ ମାରିଗଲେ ଦଶସସ୍ର ଯୋଦ୍ଧୀ ।
ସମର ରହୁ ବୋଲିଣ ଶୁଭେ ଶଙ୍ଖଧ୍ୱନି
ଜୟକରି ବାହୁଡ଼ିଲେ କୁରୁବଳ ସୈନି ।
ସମର ରହୁ ବୋଲିଣ ଶୁଭେ ଶଙ୍ଖଧ୍ୱନି
ଜୟକରି ବାହୁଡ଼ିଲେ ବୀର ଶାୟନ୍ତନୀ ।
ଉଚ୍ଚେ ଡାକିଣ ବୋଇଲେ ଆରେ ରେ ଅର୍ଜ୍ଜୁନ
ଦେଖିଲୁଟିକି ପ୍ରତିଜ୍ଞା ମୋର ବୀରପଣ ।
ଆଜ ଦଶସସ୍ର ଜାଣ ନାଶ ତୋର ଯୋଦ୍ଧୀ
କାଲି ଦଶସସ୍ର ନାଶିବଇଁ ଶର ବିନ୍ଧି ।
ଏହା କହି ବାହୁଡ଼ିଲେ ସେଠାରୁ ଗାଙ୍ଗବେ
ରଥ ଗଜ ଅଶ୍ୱ ସେନା ପଦାତି ସମ୍ଭର୍ବେ ।
ବାମ ଡାହାଣରେ ଦେଖ ଗୋବିନ୍ଦ ବୋଇଲେ
ଦଶସସ୍ର ଯୋଦ୍ଧା ତୋର ଭୀଷ୍ମ ନାଶ କଲେ ।
ରଥୁ ଓହ୍ଲାଇ ଦେଖଇ ପାର୍ଥ ମହାମତି
ସୈନ୍ୟମାନେ ବେନି ବେନି ଖଣ୍ଡ ହୋଇଛନ୍ତି ।

ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ ପୁଚ୍ଛଇ କିରୀଟି
ଜୟକରି କୁରୁବଳ ଯାଆନ୍ତି ଲେଉଟି।
ଏହି କଥା ଦେଖି ମୋତେ ଲାଗଇ ତାଟକା
ପାଣ୍ଡବଗଣଙ୍କୁ ଏବେ ଆଉ ନାହିଁ ରକ୍ଷା।
କପାଳରୁ ଝାଳ ଦେବ ପଶନ୍ତେ ନେତ୍ରରେ
ଶୀଘ୍ରତେ ଶର ପେଷିଲେ ପୋଛିବା କାଳରେ।
ଏତେ ଦ୍ୱନ୍ଦ୍ୱ ଆରମ୍ଭିଲୁ ତୁହି ଅନିମିତ୍ତେ
ଆମ୍ଭଙ୍କୁ ତୁ ଆଉ ରଖିପାରିବୁ କେମନ୍ତେ।
ଏତିକି ଛିଦ୍ରକୁ ସୈନ୍ୟ ଦଶସସ୍ର ମାରି
ଗଲେ ଜୟଶଙ୍ଖ ବାଇ ମହାନାଦ କରି।
ଯଶ କରିଣ ପତାକା ଉଡ଼ାଇଲେ ରଥେ
ପ୍ରତିଜ୍ଞା ରକ୍ଷା କରିଲେ ଶାନ୍ତନୁଙ୍କ ସୁତେ।
ବିକଳ ହୋଇଲେ ପାର୍ଥ ଯୋଦ୍ଧା କଷ୍ଟ ଦେଖି
ଦୁଃଖେଣ ଲୋତକ ତାର ବହେ ବେନି ଆଖି।
ବୋଲେହେ ହରି ମୋମୃତ୍ୟୁ ନୋହେୟାଙ୍କ ଆଗେ
ସମରେ ପଡ଼ିଲେ ସିନା ଏମାନେ ମୋଯୋଗେ।
ମନ୍ଦର ଦେଶର ରାଜା ଭୀମ ଚକ୍ରବର୍ତ୍ତୀ
ସେ ରାଜା ତୁଲେ ପଡ଼ିଲେ ଦଶସସ୍ର ରଥୀ।
ଯୋଜନେକ ଆୟତନେ ପଡ଼ିଲେ ପଦାତି
କାନ୍ଦଇ ଫାଲ୍‌ଗୁନି ଦେଖି ଏହିପରି ଗତି।
ହରିଙ୍କି ବୋଇଲେ ଅତି ବ୍ୟାକୁଳିତ ହୋଇ
ଏଜୀବନେ ଆଉ ମୋର କିଛିକାର୍ଯ୍ୟ ନାହିଁ।
ଏହା ଦେଖି ଜୀଇଁବାର ମୃତ୍ୟୁ ବଡ ସୁଖ
ଜୟନ୍ତ ଭୁବନେ ସ୍ୱାମୀ ଚାହିଁବି କା ମୁଖ।
ବନ୍ଧୁଭାବ କରିଣ ଯେ ଅଇଲେ ସରବେ
ସମର କରିଣ ଆମ୍ଭ ଶତ୍ରୁଙ୍କୁ ମାରିବେ।
ସର୍ବେ ବୋଲନ୍ତି ପାଣ୍ଡବେ ଜଗତରେ ଜିତା
ରାକ୍ଷସୀ ଯାଗେ ଦେଖିଲେ ପୁଣି ବଳବନ୍ତା।
ସେ ପ୍ରାୟ ମଣି ଅଇଲେ ଆମ୍ଭ ବୋଲକରି
ଯୁଦ୍ଧରେ ପଡ଼ିଲେ ସେହୁ ହୋଇ ଆଗୁସରି।
ଅନେକ ବିକଳ ହୋଇ କାନ୍ଦେ ପାର୍ଥବୀର
ଶାନ୍ତ କରିଣ କହନ୍ତି ଦେବ ଶିରୀଧର।
ଶୋକ ସଂହର ହେ ତୁମ୍ଭେ ଆରମ୍ଭିଛ ଯୁଦ୍ଧ
ଏତେବେଳେ ନିଜେ କିପାଁ ନ ହୁଅ ପ୍ରବୋଧ।
ସମ୍ପଦ ବିପଦ ଦୁଇ ଆପଣାର କର୍ମ
ହାରିବା ଜିଣିବା କଥା କ୍ଷତ୍ରୀଙ୍କର ଧର୍ମ।
ପରାଧୀନ ଯୋଦ୍ଧାମାନେ ପଡ଼ିଲେ ସମରେ
ସଂଗ୍ରାମେ ପଶିଲେ ଜାଣ ହୁଏ ଏ ପ୍ରକାରେ।
ସଂଗ୍ରାମ ପ୍ରମାଦ ନିଜ ବନ୍ଧୁ ନାଶ ହେତୁ
ଶୋକେ ତା ଅଙ୍ଗ ପ୍ରତ୍ୟଙ୍ଗେ ହେଉଛି ବେପଥୁ।
ମଞ୍ଚେ ଜନ୍ମିଲେ ଦେବତା ହୋଇଲେ ମରଇ
ଏ କଥା କହେ ଅର୍ଜ୍ଜୁନ ତୋତେ ଜଣାନାହିଁ।
ବିଚାରିଣ ଯମ ଏହା କରେ ଆତଯାତ
ଯାହାର ଯେ କର୍ମ ଦୋଷେ ପୂର୍ବର ଅର୍ଜିତ।
ମହାଭାରତ ଭୂମି ଯେ ପୁଣ୍ୟ ଥିଲେ ପାଇ
ଏ ସ୍ଥାନେ ପଡ଼ିଲେ ବାବୁ ବୈକୁଣ୍ଠକୁ ଯାଇ।
ଆକାଶକୁ ଲୟ ତୁ ହୋ କର ବୀରପାର୍ଥ
ଯେତେକ ସୈନ୍ୟ ପଡ଼ିଲେ ଯାନ୍ତି ସ୍ୱର୍ଗପଥ।
କୃଷ୍ଣଙ୍କ ବଚନେ ବୀର ଆକାଶେ ଚାହିଁଲା
ବହୁତ ବିମାନ ଦେଖି ସ୍ତବଧ ହୋଇଲା।
ଦେଖିଲେ ସମରେ ଆଜି ମଲେ ଯେତେସୈନ୍ୟ
ସମସ୍ତେ ଆରୋହିଛନ୍ତି ପୁଷ୍ପକ ବିମାନ।
ବହୁ ରତ୍ନମାନଙ୍କରେ ହୋଇଛନ୍ତି ମଣ୍ଡି
ଆଗରେ ଯେ ବୀରତୁର ବାଜଇ ଦାଉଣ୍ଡି।
ପାଟଛତ୍ର ଉଡ଼େ ଆଉ ହୁଏ ପୁଷ୍ପବୃଷ୍ଟି
ଉଭୟ ସମସ୍ତ ବଳ ଦେଖିଲେ କିରୀଟି।
ଅର୍ଜ୍ଜୁନ ଯେ ପ୍ରଣିପାତ ହରି ପାଦତଳେ
ବିଷାଦ ଚିନ୍ତୁଁ ଛାଡ଼ିଲେ ପାର୍ଥ ତେତେବେଳେ।
ତୁହି ଦେବ ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧାରୀ
ଶୟଳର ଚିନ୍ତାମଣି ମର୍ତ୍ତ୍ୟେ ଅବତରି।
ଏ ତୋର ଶ୍ରୀମୁଖ ପ୍ରଭୁ ଦେଖିଣ ଅଦ୍ୟାପି
ପାଇଣ ପରମ ଗତି ତରିଯାନ୍ତି ପାପୀ।
ଡମ ଚାଣ୍ଡାଳ ଯେ ଏଥି ଥିବା ବାଦ୍ୟକାର
ସମସ୍ତ ଦେଖିଲି ଦେବ ଯାନ୍ତି ସ୍ୱର୍ଗପୁର।
ସାର୍ଥକ ଜୀବ ତାଙ୍କର ଦେଖିଲି ଶ୍ରୀପତି
ଜୀବନ୍ତାହୁଁ ମରଣ ଏ ଅଟେ ସଦଗତି।
ବହୁତ କାନ୍ଦିଣ ଚିନ୍ତା କରୁଥିଲେ ପାର୍ଥ
କ୍ଷଣକେ ତା ଛଡ଼ାଇଲେ ଜଗତର ନାଥ।
ଜୟ ତୁହି ହୃଷୀକେଶ ପୃଥ୍ୱୀ ଚିନ୍ତାମଣି
ତୋହର ଦର୍ଶନେ ଗତି ମୁକ୍ତି ପାନ୍ତି ପ୍ରାଣୀ।
ଶ୍ୱେତ ପୀତ ନୀଳବର୍ଣ୍ଣ ଧରି ତିନିମୂର୍ତ୍ତି
ବଡ଼ ଦେଉଳ ମଧ୍ୟରେ କରିଛ ବସତି।
ଯେ ତୁମ୍ଭଙ୍କୁ ଭକ୍ତିଭରେ ଚିହ୍ନେ ହୃଦ ମଧ୍ୟେ
ତାର ଯମଦଣ୍ଡ ନାଥ ଖଣ୍ଡ ଅପ୍ରମାଦେ।
ମହାଭାରତ ଚରିତ ଶ୍ରୁତି ସୁଖକର
ମୁହିଁ କି କହିବି ତାହା ଦେବେ ଅଗୋଚର।
ସେହି ଚକାଡ଼ୋଳା ଯାହା ଦେଉଛନ୍ତି କହି
ତାହା ମୁଁ ଲେଖଇ ଏଥେ ମୋର ଦୋଷନାହିଁ।
ନୁହଁଇ ପଣ୍ଡିତ ମୁହିଁ ପଢ଼ିନାହିଁ ତିଳେ
ହୃଦରେ ଭାବଇ ଏକା ଶ୍ରୀଚଣ୍ଡୀ ଶାରଳେ।

ନ ପଢ଼ି ପଣ୍ଡିତ ମୁହିଁ ହେଲି ତାଙ୍କ ବୋଲେ
ଶାରଳା ଦାସ ଶରଣ ତାଙ୍କ ପାଦତଳେ ।

☆ ☆ ☆

## ଭୀଷ୍ମଙ୍କ ନିକଟରେ ପୁରୋହିତଙ୍କର ଅନ୍ନଦାନ କଥା ବର୍ଣ୍ଣନ

ବୈବସ୍ୱତ ମନୁ ଆଗେ ବଦନ୍ତି ଅଗସ୍ତି
ଅର୍ଜ୍ଜୁନକୁ ସମ୍ମାର୍ଜିଣ ଆସନ୍ତେ ଶ୍ରୀପତି ।
ବିଜୟ ଧର୍ମନନ୍ଦନ ଇନ୍ଦ୍ରପ୍ରସ୍ଥପୁରେ
ବିରସରେ ଚଳିଗଲେ ସର୍ବ ମହାବୀରେ ।
ସ୍ନାନ ନିତ୍ୟକର୍ମ ସାରି କଲେ ଦେବ ପୂଜା
ସନ୍ଧ୍ୟା ସାରି ମଣୋହିକୁ ବିଜେ ଦେବରାଜା ।
ଶୁଣ ହେ ଚୈତନ୍ୟ ଏବେ କୌରବ ସଇନି
ସାଧୁ ସାଧୁ ଭୀଷ୍ମ ବୋଲି କଲେ ମୁଖଧ୍ୱନି ।
ବହୁରତ୍ନ ବନ୍ଦାଇଲେ ରାଜା ଭୀଷ୍ମମାଥେ
ଲକ୍ଷେକ ସୁବର୍ଣ୍ଣ ଦାନ କଲେ କୁରୁନାଥେ ।
ବୋଲେ ଏମନ୍ତେ ସମର କଲେ ଭୀଷ୍ମଦେବେ
ପାଣ୍ଡବଙ୍କର ସଇନି ଆଉକି ବର୍ତ୍ତିବେ ।
ଏବେ ଯେ ଜାଣିଲି ପିତା ତୁମ୍ଭର ଯୁଦ୍ଧେହିଁ
ଧରମ ଦେବତା ମୋତେ କରିବେକ ଦ୍ରାହି ।
ଏସନକ ପୁରୁଷାର୍ଥ କଲା ମହୀପାଳେ
ଦୃତୀୟ କାଳର ସ୍ନାନ ସନ୍ଧ୍ୟାହିଁ ସାରିଲେ ।
ମଣୋହିକୁ ବିଜେ ଦେବକଲେ ଯେତେବେଳେ
ଦାନରେ ବାଞ୍ଛା କରନ୍ତି ଶାୟନ୍ତନୁ ବାଳେ ।
ଭୋଜନାଦି ସାରି ଭୀଷ୍ମ ଆସ୍ଥାନେ ବସିଲେ
ପ୍ରୋହିତଙ୍କୁ ଡକାଇଣ ଏପରି ପୁଚ୍ଛିଲେ ।
ବୋହିଲେ ପ୍ରୋହିତ ମୁହିଁ କଲି ବ୍ରହ୍ମହତ୍ୟା
ଏଥକୁ ଉପାୟ କହ ଲାଗେ ଗୁରୁଚିନ୍ତା ।
ପ୍ରୋହିତ ବୋଲେ ଏଥକୁ ଅନ୍ନ ଦାନଦେଲେ
ହତ୍ୟାଦୋଷମୁକ୍ତ ହେବ ଅନ୍ନେ ଶାନ୍ତି ହେଲେ ।
ଭୀଷ୍ମ ବୋଇଲେ ଏମନ୍ତ ଅଛି ଯେବେ ପୂର୍ବେ
ତବ ମୁଖୁ ଶୁଣି ହାଦେ ତା କରିବି ଏବେ ।
ପୁରୋହିତ ବୋଇଲେ ହୋ ଶୁଣ ପୂର୍ବକଥା
ଶୁଦ୍ଧୋଦକ ବୋଲି ସତ୍ୟଯୁଗର ବାରତା ।
ପୁରୁରବା ବଂଶେ ଶ୍ୱେତକକ୍ଷ ବୋଲି ରାୟେ
ଦାନେ ଶୂରବନ୍ତ ସେହୁ ଦିଗପାଳ ପ୍ରାୟେ ।
ବହୁଯାଗ ଯଜ୍ଞ କଲା ସେହି ନରନାଥ
ଗଜ ଅଶ୍ୱଆଦି ଦାନ ଦେଲାକ ବହୁତ ।
ସ୍ୱର୍ଣ୍ଣଦାନ ଜଳଦାନ ତୁରଙ୍ଗ ଶକଟ
ଏହି ଦାନ ଦିଏ ସଦା ଯେ ଶ୍ୱେତ ସମ୍ରାଟ ।

ପ୍ରତିଦିନ ଏହିପରି ଦିଏ ସେ ରାଜନ
ଭୋଜନ ଦାନରେ ତାର ନ ବଳିଲା ମନ ।
ବହୁସସ୍ର ବର୍ଷ ରାଜା ସତ୍ୟଯୁଗେ ବର୍ତ୍ତି
କାଳେ ପ୍ରାଣତ୍ୟାଗ କଲା ସେହି ନରପତି ।
ତ୍ରାସେ ତା ପାଶେ ନଇଲେ କେହି ଯମଗଣ
ବିଚାର ହେଲା ରାଜାର ଧର୍ମଙ୍କ ସଦନ ।
ଦେବଲୋକେ ବସାଇଲେ ତାଙ୍କୁ ଆସ୍ଥାନରେ
ବହୁରତ୍ନ ଆଭରଣ ପିନ୍ଧାଇଲେ ତାରେ ।
କ୍ଷୁଧାରେ ଅତି ବିକଳ ହେଲା ନୃପମଣି
ସ୍ୱର୍ଗରେ ନରେନ୍ଦ୍ର ତାଙ୍କୁ ମାଗେ ଅନ୍ନପାଣି ।
ବିଧାତା ବୋଇଲେ ତୁ ନ ଦେଲୁ ଅନ୍ନଦାନ
ଦେଇଥିଲେ ପାଇଥାନ୍ତୁ ଶାସ୍ତ୍ରର ବିଧାନ ।
ବିଧାତା ବୋଇଲେତୋତେ କ୍ଷୁଧାଲାଗେଯେବେ
ଏ ସ୍ଥାନରୁ ନରପତି ତୁହି ଯାଅ ଜବେ ।
ତୋ ପିଣ୍ଡ ଦହନ କଲେ ଯେବଣ ଶ୍ମଶାନ
ସେ ପାଉଁଶ କର ତୁହି ପ୍ରତିମା ଗଠନ ।
ସେହି ପାଉଁଶ ପିତୁଳି ତୁହି ଯେ ଖାଇଲେ
ତୋର ପିଣ୍ଡ ସୁସ୍ଥ ହେବ ଯାଅ ଆମ୍ଭ ବୋଲେ ।
ପିତାମହଙ୍କ ବଚନେ ଗଲା ତହୁଁ ବେଗେ
କୁରୁନାମେ ବ୍ରହ୍ମା ବିଜେ କଲେ ମଧ୍ୟସ୍ୱର୍ଗେ ।
ତାହାଙ୍କୁ ଦେଖିଣ ଶ୍ୱେତକକ୍ଷ ପାଡ଼େ ବୋବି
ଭୋ ପିତା ଏଥୁ କିପରି ମୁକତି ପାଇବି ।
ଧାତା ବୋଇଲେ ଅଗସ୍ତି ନାମେ ଯେଉଁଋଷି
ତାହାଙ୍କୁ ଦେଖିଣ ତୁହି ମୁକତି ହୁଅସି ।
ତ୍ରେତୟା ଦ୍ୱାପର ଯୁଗ ହାଦେ ବହିଗଲା
କଳିଯୁଗ ଆସିକରି ପ୍ରବେଶ ହୋଇଲା ।
ମାଟି ଖାଇବା ପାଇଁକି ଆସେ ନରବର
ଶ୍ମଶାନେ ମାଟି ଖାଉଚି ଶ୍ୱେତ ଖରତର ।
ଆସିବାର ନକ୍ଷତ୍ର ଯେ ହସ୍ତା ସେ ଦିନରେ
ଆମ୍ଭେ ପ୍ରବେଶ ହୋଇଲୁ ମନ୍ଦାକିନୀ ତୀରେ ।
ବୋଇଲୁ ବହୁଭୂଷଣ ଦେଖୁ ତୋର କାୟେ
ଶରୀର ଦିଶଇ ଯେହ୍ନେ ଦେବତା ପରାୟେ ।
ଛାର ମଶାଣି ପାଉଁଶ କିପାଇଁ ଖାଉଛୁ
ଅମୃତ ତେଜ୍ୟା କରିଣ ଏହା କିପାଁ ଇଛୁ ।
କେମନ୍ତ କାରଣ ଏ କି ତୋହର ପ୍ରକୃତି
ସେ ବୋଲେ ମୋ ନାମ ଶ୍ୱେତକକ୍ଷ ମହୀପତି ।
ବହୁଦାନ ଦେଲି ମୁହିଁ କଲି ବହୁଯଜ୍ଞ
ଅନ୍ନଦାନ ନ ଦେଲି ମୁଁ ମୋହର ଅଭାଗ୍ୟ ।
ସମୟେକ ପ୍ରାଣତ୍ୟାଗ ହେଲି ଯେତେବେଳେ
ବହୁତ ଦୁଃଖ ପାଇଲି କ୍ଷୁଧାର ବିକଳେ ।

ଏହିପରି ହୋଇବାରୁ ପିତା ପାଶେ ଗଲି
ବହୁତ ବିନୟ ହୋଇ ତାଙ୍କୁ ଜଣାଇଲି ।
ପିତା ବୋଇଲେକ ତୁ ନ ଦେଲୁ ଅନ୍ନଦାନ
ତୋହର ମୃତପିଣ୍ଡକୁ କର ତୁ ଭକ୍ଷଣ ।
ମୁଁ ବୋଇଲି ପ୍ରତିକାର କର ଏଥୁ ମୋତେ
ଏ ଘୋର ସଙ୍କଟପାରି ହୋଇବି କେମନ୍ତେ ।
ପିତା ବୋଇଲେ ଅଗସ୍ତି ଋଷିଙ୍କର ଭେଟ
ପାଇଲେ ଯିବ ତୋହର ଏ ମହତ କଷ୍ଟ ।
ଆବର ବୋଇଲେ ତାଙ୍କୁ ଭେଟିଲେ କହିବୁ
ସେହି ମହାତ୍ମାଙ୍କ ଯୋଗେ ଏ କଷ୍ଟ ତରିବୁ ।
ଶ୍ୱେତକଳ୍ପ ରାଜା ମୁଖୁଁ ଏ ବଚନ ଶୁଣି
ଚାଲିଗଲୁ ଆମ୍ଭେ ତହୁଁ ହୃଦେ ତାହାଘେନି ।
ମେଖଳା ଗଙ୍ଗାଜଳରେ ଯାଇଣ ପଶିଲୁ
ଯେ ବିଧି ବିଧାନ ନିତ୍ୟକର୍ମମାନ କଲୁ ।
ପୁଣି ବାହୁଡ଼ି ଅଇଲୁ ନିତ୍ୟ ଆଶ୍ରମକୁ
ଭେଟିଲୁ ଯାଇଣ ଶ୍ୱେତକଳପ ରାଜାଙ୍କୁ ।
ଶୁଣ ଆହୋ ମହାରାଜା ବଦନ୍ତି ଅଗସ୍ତି
ହୋଇଲୁ ଯେ ବାଳଖିଲ୍ୟା ବ୍ରହ୍ମାଙ୍କ ସନ୍ତତି ।
ଏହି ବ୍ରାହ୍ମଣେ ଭୋଜନ ଦିଅ ମୋ ହସ୍ତର
ଏଘୋର ପାପରୁ ତେବେ ହୋଇବୁ ତୁପାର ।
ଶୁଣିକରି ସେହିକ୍ଷଣି ଜଳ ତିଳ ଆଣି
ଆମ୍ଭ କରେ ଟେକି ଦେଲା ଶ୍ୱେତ ନୃପମଣି ।
ସତ୍ୟେ ସଂକଳ୍ପ କରିଣ ତହୁଁ ଦେଲା ଜଳ
ବୋଇଲେ ଖଣ୍ଡିଲା ତୋର ଦୁର୍ଗତି ସକଳ ।
ଏବେ ଶବଭକ୍ଷ ଆଉ ନ କର ଭୋଜନ
ଏଣିକି ମିଳିବ ତୋତେ ଦିବ୍ୟଶାଳି ଅନ୍ନ ।
ଇଦଂ ବାକ୍ୟ କହି ଆମ୍ଭେ ବାଞ୍ଛନ୍ତେ କଲ୍ୟାଣ
ଶ୍ୱେତକଳ୍ପ ରାଜା ଅନ୍ନଦାତା ହେଲା ଜାଣ ।
ଯେଉଁ କିଆରୀରୁ ଚଷାଧାନ କାଟିନେଲା
ଗୋଟିଏ ଗୋଟିଏ ଧାନ ଯାହା ପଡ଼ିଥିଲା ।
ଗୋଟିଏ ଗୋଟିଏ କରି ଖୁଣ୍ଟି ନରନାହା
ତ୍ରିଂଶଦିନେ ଆମ୍ଭ ହସ୍ତେ ସବୁ ଦେଲା ତାହା ।
ଶୁଣହୋ ଗାଙ୍ଗେୟ ଏହା ବୋଲନ୍ତି ପ୍ରୋହିତେ
ଅନ୍ନଦାନ ନଦେଲେ ଯେକଷ୍ଟ ପାଇଏତେ ।
ଅଥବା ଯେହୁ ବହୁତ ଦେଇପାରେ ଅନ୍ନ
ତାହାର ପୁଣ୍ୟ କହିବା କେ ଅଛି ଭାଜନ ।
ତଥାପି ଦୁଃଖିଯେବେ କିପାଏ ସେହୁ ପ୍ରାଣୀ
ଯଥାସାଧ ଅତିଥିଙ୍କୁ ଦେବ ଅନ୍ନପାଣି ।
ଭୀଷ୍ମ ଯେସାନନ୍ଦ ହେଲେ ଏହି ବାକ୍ୟଶୁଣି
ଲକ୍ଷେ ବିପ୍ରଙ୍କୁ ଭୋଜନ ଦ୍ୟନ୍ତି ନିତ୍ୟେ ଆଣି ।

ସରସ୍ୱତୀ ନଦୀତୀରେ ଦେଲେ ଅନ୍ନଛତ୍ର
ଯେଯେତେ ଇଚ୍ଛାଭୋଜନ ପାଆନ୍ତି ସମସ୍ତ ।
ଭାତ ତିଅଣ ଜଳ ଯେ ଆଉ ବସ୍ତ୍ରଦାନ
ଯୁଦ୍ଧର ଶ୍ରମେ ଭୁଞ୍ଜନ୍ତି ତହିଁ ସର୍ବଜନ ।
ଯେ ଯେତେ ମାଗିଲେ ତାଙ୍କୁ ଦିଅଇ ସବୁନ୍ତି
ଦାନ ଧର୍ମ କରନ୍ତେ ଯେ ପ୍ରସରିଲା ରାତି ।
ଏ ସମୟେ ଚଳିଗଲେ ଭୀଷ୍ମ ନିତ୍ୟକର୍ମେ
ନିତ୍ୟକର୍ମ ସାରି ବିଜେ ମାଧବ ଦର୍ଶନେ ।
ଦରଶନ ସାରି ସେହୁ ଯୁଦ୍ଧେ ବାହାରିଲେ
କେଉଁପରି ଯୁଦ୍ଧ ହେବ ମନରେ ଭାଳିଲେ ।
ଶୁକ୍ରବାର ସେଦିନ ଯେ ସାଧନାମେ ଯୋଗ
ବିଛା ସଂକ୍ରାନ୍ତିର ସତାଇଶ ଦିନ ଭୋଗ ।
ତୃତୀୟ ଦିନର ଯୁଦ୍ଧ ହେଉଅଛି ଲେଖା
ପାଣ୍ଡବବଳଙ୍କୁ ଭୀଷ୍ମ ନ କରନ୍ତି ଶଙ୍କା ।
ବୀରତୁର ବିଜିଘୋଷ ମର୍ଦ୍ଦଳ ଦାଉଣ୍ଡି
ଅନେକ ରତ୍ନରେ ଭୀଷ୍ମଙ୍କର ରଥ ମଣ୍ଡି ।
ଏକଲକ୍ଷ ପାଟଛତ୍ର ଆଲାନ୍ଧ ଉଦଣ୍ଡ
ଝଲକନ୍ତି ମଣିମୁକ୍ତା ଯେହ୍ନେ ମାରତଣ୍ଡ ।
ଅନଳ ମଣ୍ଡଳ ମହୀଚନ୍ଦ୍ର ଚୂଡ଼ାମଣି
ବିରାଜନ୍ତି ଅଷ୍ଟରତ୍ନ ହୃଦେ ଚନ୍ଦ୍ରମଣି ।
ତାଡ଼ ତୋଡ଼ର ବାହୁଟି ଆଉ ଜଗଦ୍‌ବଳା
ଦିବ୍ୟ ମୁଦି କଙ୍କଣ ଯେ ଗଳେ ରତ୍ନମାଳା ।
ଦିବ୍ୟ ଅଳଙ୍କାର ମଣ୍ଡି ହୋଇ ଗଙ୍ଗାସୁତ
ରଥେ ବିଜେକଲେ କରେ ଧରି ଧନୁ ଅସ୍ତ୍ର ।
ଶ୍ରୀଭୁଜେ ଅର୍ଘ୍ୟ ଘେନିଣ ମାନଚକ୍ରବର୍ତ୍ତୀ
ଭୀଷ୍ମଙ୍କର ଶିରେ ନେଇ ବନ୍ଦାଏ ତଡ଼ତି ।
ଦଧିବାମନ ସୁମରି ଚଳ ପିତାମହ
ଏ ମୋହର ଅଭିମାନ ଫେଡ଼ିବ ନିଶ୍ଚୟ ।
କୌରବବଂଶକୁ ନାଥ ତୁହି ସେ ଧାରଣ
ତୁମ୍ଭେ ସେ ମୋହର ବଂଶ କରସି ରକ୍ଷଣ ।
ଅନାଥ ଜନକୁ ନାଥ ତୁହି ସେ ରଖନ୍ତା
ତୁମ୍ଭେ ଅଟ ମହା ନାଗ ମୁଁ ମୂଷିକ ଭୁକ୍ତା ।
ତୁମ୍ଭର ଶରଣ ବିନା ନ ବାଞ୍ଛଇ ଆନ
ସୋମବଂଶ ରଖ ତୁମ୍ଭେ ଭୀଷ୍ମ ଦ୍ରୋଣ କର୍ଣ୍ଣ ।
ଏହିପରି ପୁରଃସରି କହେ କୁରୁପତି
କାର୍ତ୍ତିକେଶ୍ୱରଙ୍କ ପ୍ରାୟେ ଦିଶେ ଭୀଷ୍ମମୂର୍ତ୍ତି ।
ପାଞ୍ଚଲକ୍ଷ ହସ୍ତୀ ପାଞ୍ଚ କ୍ଷଉଣୀ ପଦାତି
ପାଞ୍ଚ ଅଇବ୍ରତ ରଥ ଅଛି ହାଦେ କତି ।
ଚାଳିଶ ସହସ୍ର ଯୋଦ୍ଧା ହୋଇଲେ ଗଣିତା
ଏତେକ ଘେନି ବାହାର ଭୀଷ୍ମ ମହାରଥା ।

ଗଗନ ଉଚ୍ଛୁଳଇ ଯେ ମୁଖରାବ ଧ୍ୱନି
ସମଦଣ୍ଡ ମଧ୍ୟେ ଭୀଷ୍ମ ହେଲେ ଆଗୁଆଣି ।
ପାଣ୍ଡବ ବଳ ଯେ ଭୀଷ୍ମ ବୀରଙ୍କୁ ପ୍ରଶଂସି
ନିଶ୍ଚୟ ପାଣ୍ଡବବଳ ଦେବେ ଆଜି ଧ୍ୱଂସି ।
ଏସନ ସମୟେ ଭୀଷ୍ମ ସଇନୀ ଚାଳନ୍ତେ
ଶ୍ୱେତ ନାମରେ ରଥି ଯେ ବିରାଟର ସୁତେ ।
ରଥର ସ୍ତମ୍ଭେ ସ୍ଫଟିକ କଣୟ ଛାଏଣି
ଅଷ୍ଟ ରତ୍ନରେ ରଥକୁ କରିଛି ମଣ୍ଡଣି ।
ଶଙ୍ଖ ଶ୍ୱେତ ଉତ୍ତର ଯେ ବିରାଟର ପୁତ୍ର
ଯୁଧିଷ୍ଠିଙ୍କ ପାଶେ ସେହୁ ପ୍ରତିଜ୍ଞା ସାମର୍ଥ ।
ଯୁଧିଷ୍ଠିଙ୍କୁ ଜଣାଇଲା ପଡ଼ିଣ ପୟରେ
ମୋତେ ସେନାପତି କର ଆଜିର ସମରେ ।
ବିଶ୍ୱାମିତ୍ରଠାରୁ ବିଦ୍ୟା ପାଇଅଛି ଭଲେ
ନିମିଷକେ ଜିଣିବି ମୁଁ ଯେତେ ଭୀଷ୍ମ ହେଲେ ।
ଯୁଧିଷ୍ଠି ସମ୍ମତ କଲେ ତାର ବାକ୍ୟ ଶୁଣି
ଅର୍ଜ୍ଜୁନ ଛାମୁରେ ତାକୁ ଉଭାରିଲେ ଆଣି ।
ବୋଲନ୍ତି ଧର୍ମନନ୍ଦନ ଶୁଣ ସବ୍ୟସାଚି
ଭୀଷ୍ମେ ଜିଣିବାକୁ ଶ୍ୱେତ ପ୍ରତିଜ୍ଞା କରୁଛି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଦେବ ଧର୍ମେ
ୟା ଭାର ଉତ୍ତର ନେଲା ଗୋଧନ ହରଣେ ।
ଦୁର୍ଯ୍ୟୋଧନ ସୈନ୍ୟ ଦେଖି ହୋଇଲା କାତର
ମୋତେ ବୋଇଲା ଆଣିଲୁ ସମୁଦ୍ର ଭିତର ।
ମୁଁ ଯେତେବେଳେ କହିଲି ଯୋଦ୍ଧାଙ୍କର କଥା
ମୋତେ ଛାଡ଼ି ପଳାଇଲା ଦେଇଣ ଅବସ୍ଥା ।
ଅଜ୍ଞାତ ବନବାସକୁ ମୁଁ ନ କରି ଆଶ
ଅଠରକ୍ଷୌଣୀ ସୈନ୍ୟରେ ଏକାଦେଲି ଝାସ ।
ଏହାଙ୍କର ମହିମା ମୁଁ ଜାଣଇ ଯେ ଭଲେ
ରାଜ୍ୟଆଶା ଛାଡ଼ଦେବ ୟାକୁଆଶାକଲେ ।
ଅତ୍ୟନ୍ତ ପ୍ରମାଦ ଦେବ ନିଶ୍ଚୟ ଘଟିବ
ଏହାକୁ ଆଶା କରିଲେ କିଛି ନ ହୋଇବ ।
ଅତ୍ୟନ୍ତ ସୁନ୍ଦର ୟାର ରୂପ ଦିଶୁଛଇଁ
ୟାକୁ ଆଶାକଲେ ନିଶ୍ଚେଁ ଭେଳା ବୁଡ଼ିବଇଁ ।
ଅତ୍ୟନ୍ତ ସୁନ୍ଦର ହୁନ୍ତି କପଟିଆ ଲୋକେ
ତାକୁ ଆଶାକରି ଭେଳା ବୁଡ଼ାନ୍ତି ଯେ ଥୋକେ
କନ୍ୟା ଯଦ୍ୟପି ବାଳୁତ ବିଧବା ହୁଅଇ
ତାକୁ ଆଶା କଲେ ଜାଣ ଧର୍ମ ନାଶଯାଇ ।
ସ୍ୱାମୀ ଧନବନ୍ତ ହୋଇ କୃପଣ ହୋଇଲେ
କୀର୍ତ୍ତି ଧର୍ମ ରହଇ କି ତାହାର କୁଳରେ ।
ନିଶ୍ଚେଁ ଯେବେ ସେ ଆରମ୍ଭ କରିବ ସଂଗ୍ରାମ
ତାହାର ପ୍ରହାରେ କେବେ ନ ଟଳିବ ଲୋମ ।
ଆହେସ୍ୱାମୀ କ୍ରୋଧେପ୍ରେତ ବିସ୍ତାରିବତୁଣ୍ଡ
ବୋଲଇ ଭକ୍ଷିବି ମୁହିଁ ସପତ ବ୍ରହ୍ମାଣ୍ଡ ।
କାଳେ ତାହା ତ ନୁହଇ ଏ କଥା ତେସନ
ସ୍ୱପନ ଫଳକୁ ଆଶାକରେ ମୂର୍ଖଜନ ।
ଏହା ଶୁଣି ଯୁଧିଷ୍ଠିର ହୋଇଲେ ମଉନ
ନାରାୟଣ ମୁଖ ଚାହିଁ ବୋଲଇ ଅର୍ଜ୍ଜୁନ ।
ଅଜା ଯୂଥ ରହଇ କି ବ୍ୟାଘ୍ରର ଆଶ୍ରମ
ତୁମ୍ଭେ ଅନୁଗ୍ରହ କର ପୁରୁଷ ଉତ୍ତମ ।
ସହସ୍ରେକ ଭୀଷ୍ମ ହେଉ ଦୁଇସସ୍ର ଦ୍ରୋଣ
ସହସ୍ରେକ ଅଶ୍ୱତ୍ଥାମା ଲକ୍ଷେ ହେଉ କର୍ଣ୍ଣ ।
ଯେତେକ ବୀର ହେଉନ୍ତୁ ଜିଣିବ ଅର୍ଜ୍ଜୁନ
ପ୍ରତିଜ୍ଞା କରିଣ ପାର୍ଥ କହଇ ଏସନ ।
ତୁମ୍ଭେ ପ୍ରଭୁ ବାହୁଥିବ ରଥକୁ ମୋହର
ମୋହର କେବଳ ଆଶା ନାମଟି ତୁମ୍ଭର ।
ବ୍ରହ୍ମା ଆଉ ରୁଦ୍ର ଇନ୍ଦ୍ର ହୋଇବ ଯଦ୍ୟପି
ସୃଷ୍ଟିଯାକ ଜିଣିବି ମୁଁ ମନଭେଦି କ୍ଷେପି ।
ତୁହି ଦେବ ଜଗତର ଜନ ଚିନ୍ତାମଣି
ମାନ ଉଦ୍ଧାରଣ ତୁହି ଆୟୁଦାତା ପୁଣି ।
ସ୍ୱାମୀ ଭୀଷ୍ମ ଦ୍ରୋଣ କର୍ଣ୍ଣ ପ୍ରତ୍ୟକ୍ଷରେ ଯୋଧି
ମାନବ ହୋଇଣ କିଏ ତାକୁ ପାରେ ସାଧି ।
ପୂର୍ବଜନ୍ମେ ମୁହିଁ ବହୁ ତପ କରିଥିଲି
ସାରଥିରୂପେ ତୁମ୍ଭଙ୍କୁ ପ୍ରାପତ ହୋଇଲି ।
ଶ୍ରୀକୃଷ୍ଣ ଚରଣ ତଳେ ଶରଣ ମୁଁ ନିତ୍ୟେ
ଶୂଦ୍ରମୁନି ଶାରଳା ଯେ ଭାବେ ହୃଦଗତେ ।



## ଭୀଷ୍ମଙ୍କ ତୃତୀୟଦିନ ଯୁଦ୍ଧ ଚତୁର୍ଥଦିନେ ଶ୍ୱେତ ସେନାପତି ପଦେ ନିଯୁକ୍ତି

ଶୁଣ ଆହେ ଚଇତନ କହଇ ମୁଁ ତୋତେ
ପ୍ରତିଜ୍ଞା କରିଣ ପାର୍ଥ ବିଜେକଲା ରଥେ ।
ସାରଥି ହୋଇଲେ ପ୍ରଭୁ ଅଭେଦାତ୍ମା ଜାଣି
ଶଙ୍ଖଚକ୍ର ଶାରଙ୍ଗ ଯେଗଦା ଶୋହେପାଣି ।
ଶଙ୍ଖ ଶ୍ୱେତ ଗୋକ୍ଷୁର ଯେ ହୟ କାମପାଳ
ହଂସ ପ୍ରାୟ ପହଁରନ୍ତି ରଣକ୍ଷେତ୍ର ଜଳ ।
ଉଭୟ ବଳ ସୈନ୍ୟ ଯେ ସମୁଦ୍ର ଅଟନ୍ତି
ହଂସ ରୂପେ ଚାରି ଅଶ୍ୱ ବିହରନ୍ତି ।
ଇନ୍ଦ୍ର ପ୍ରସ୍ଥ ରଣଭୂମି ଦ୍ୱାଦଶ ଯୋଜନ
ତିନି ଦଣ୍ଡରେ ଭେଟିଲେ ଯାଇ କୁରୁସୈନ୍ୟ ।

ଦେଖିଲେକ କୁରୁଥାଟେ ଭୀଷ୍ମ ଆଗୁଆଣି
କୁରୁ ସାଗର ଆବୋରିଛନ୍ତି ବିନ୍ଧି ଜାଣି ।
ଜଗନ୍ନାଥ ଭୀଷ୍ମଙ୍କର ଛାମୁରେ ଯେ ଭେଟି
ଦେଖିଣ ଗଙ୍ଗାନନ୍ଦନ ରଥେ ଥାଇ ଲୋଟି ।
ରଥରେ ଥାଇଣ ଭୀଷ୍ମ କଲେ ପ୍ରଣିପାତ
ତବମୁଖ ଚାହିଁ ଯେହ୍ନେ ସ୍ୱର୍ଗ ହେଉ ପ୍ରାପ୍ତ ।
ଗୋବିନ୍ଦ ବୋଇଲେ ଭୀଷ୍ମ ପୂରୁ ମନୋବାଞ୍ଛା
ଯାହା ତୁ ମାଗିଲୁ ଭୋଗକର ତୋର ଇଚ୍ଛା ।
ଗାଙ୍ଗେୟ ବୋଇଲେ ହରି ଦୁଇ ବଳ ମଧେ
ମୋ ମୁକ୍ତିଦାତା ସାରଥି ଅର୍ଜ୍ଜୁନ ସନ୍ନିଧେ ।
ବାଞ୍ଛା ସିଦ୍ଧ ହେଉ ବୋଲି ହୋଇଲୁ ପ୍ରସନ୍ନ
ରଣେତୋର ଆଗେମୋତେ ଛେଦୁ ଏଅର୍ଜ୍ଜୁନ ।
ଗୋବିନ୍ଦ ବୋଇଲେ ଭୀଷ୍ମଯେବେ କଲୁଇଚ୍ଛା
ଅର୍ଜ୍ଜୁନ ନିଶ୍ଚେ ତୋହର ପୂରାଇବ ବାଞ୍ଛା ।
ପୁନଃ ପୁନଃ ରଥେ ଭୀଷ୍ମ କଲେ ନିଉଛାଳି
ତାଙ୍କୁ କଲ୍ୟାଣ କରନ୍ତି ଦେବ ବନମାଳୀ ।
ଏତେକ ବୋଲିଣ ଭୀଷ୍ମ ଧନୁ କରେ ଘେନି
ଶ୍ରୀକରେ ଗାଣ୍ଡୀବ ଧନୁ ଧଇଲେ ଫାଲ୍‌ଗୁନି ।
କହୁଁ କହୁଁ କୁପିତ ସେ ବୀର ଫାଲଗୁନି
ଭୀଷ୍ମ ବିନ୍ଧିଲେ ସହସ୍ର ନାରାଚକୁ ଘେନି ।
ପୁନର୍ବାର ବିନ୍ଧିଲେ ଯେ ଶର ସସ୍ର ଚାରି
ଚାରି ଅଶ୍ୱ ସାରଥିକି କୃଷ୍ଣ ଆଦିକରି ।
ପୁନରପି ଅଇବ୍ରତ ଘେନିଣ ନାରାଚ
ବିନ୍ଧିଲେ ଆକର୍ଷି କପିକେତନର ଧ୍ୱଜ ।
ହସ୍ତର ବ୍ୟଗ୍ରତା ଯାହା କହି ତ କେ ପାରି
କକଡ଼ା ମାସରେ ଯେହ୍ନେ ବରଷଇ ବାରି ।
ନାରାଚତେଜେ ଆଦିତ୍ୟତେଜ ହେଲାନ୍ୟୁନ
ଏପରି ଶର ବିନ୍ଧିଲେ ଶାନ୍ତନୁ ନନ୍ଦନ ।
ଗୋବିନ୍ଦ ବୋଇଲେ ତୁହି ଶୁଣସିରେ ପାର୍ଥ
ଭୀଷ୍ମଙ୍କର ଶର ଘୋଟି ଆସି ତୋର ରଥ ।
ନାରାୟଣଙ୍କ ବଚନେ ପାର୍ଥ ବୀରମଣି
ପାଞ୍ଚ ଅଇବ୍ରତ ଶର ବିନ୍ଧିଲେକ ଟାଣି ।
ଭୀଷ୍ମଦେବ ବହୁତର ଶର ଯେ ବିନ୍ଧିଲେ
ଏକ ଏକ ନାରାଚକେ ପାର୍ଥ ତା ଛେଦିଲେ ।
ଗଙ୍ଗାର ନନ୍ଦନ ଏହା ଦେଖିଣ ପ୍ରଶଂସି
ଧନ୍ୟ ଧନ୍ୟ ରେ ଅର୍ଜ୍ଜୁନ ତୋର ଗୁଣରାଶି ।
କ୍ଷଣେ କ୍ଷଣେ ପଡ଼ିତାଳ ଶରୁ ଅଗ୍ନି ଉଠି
ଭୀଷ୍ମଙ୍କର ନାରାଚ ଯେ ସର୍ବଦିଗ ଘୋଟି ।
ଶଙ୍ଖ ଶ୍ୱେତ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଉତ୍ତର
ପୁଣି ସେହୁ ଅଭିମନ୍ୟୁ ଅର୍ଜ୍ଜୁନ କୁମର ।

ଦିବ୍ୟ ଅବତାର ହୋଇଛନ୍ତି ଷଡ଼ରଥୀ
ଶ୍ୱେତ ଆବୋରିଲା ଯାଇ ଦ୍ରୋଣ ମହାରଥୀ ।
ଧନୁରେ ଶର ପୂରାଇ କୁମାର ଶିଖଣ୍ଡୀ
ଅଶ୍ୱତ୍ଥାମା ଆଗରେଣ ରଥ ନେଇ ମଣ୍ଡି ।
ଧୃଷ୍ଟଦ୍ୟୁମ୍ନ ଯେ କ୍ଷତ୍ରିୟ କୁଳକୁ ଉତ୍ତମା
ରଥ ଆବୋରିଲେ ନେଇ ଆଗେ କୃତବର୍ମା ।
ଶଙ୍ଖ ନାମେ ରଥୀ ଯେହୁ ବିରାଟର ପୁତ୍ର
ଶଲ୍ୟଙ୍କର ତୁଲେ ଯୁଦ୍ଧ କଲା ଅପ୍ରମିତ ।
କର୍ଣ୍ଣର ତୁଲେ ଉତ୍ତର କୁମାର ଯେ ମିଳି
ସୋମଦତ୍ତେ ଅଭିମନ୍ୟୁ ବୀର ଯେ ଓଗାଳି ।
ଭୂରିଶ୍ରବାର ସମର ଦ୍ରୁପଦର ତୁଲେ
ବିରାଟ ଛାମୁରେ କୃପ ଆଚାର୍ଯ୍ୟ ମିଳିଲେ ।
ପଞ୍ଚତ୍ରିଂଶ ରଥୀ ତୁଲେ ରାଜା ଜୟଦ୍ରଥ
ଆସିଣ ମିଳିଲେ ଭୀମସେନର ଅଗ୍ରତ ।
ଜୟଦ୍ରଥକୁ ଚାହିଁଣ ଭୀମସେନ ହସି
ଏତେଦିନେ ମୋଛାମୁରେ ପଡ଼ିଲୁ ତୁଆସି ।
ଦ୍ରୌପଦୀକୁ ଚୋରିକଲୁ କାଳେବର ବନେ
ସେ ଦିନରୁ ଭେଟ ନାହିଁ ଭେଟ ଆଜି ରଣେ ।
ସାତବେଣ୍ଟି କଲି ମୁଁ ରେ ତୋର ବାଳଲୋଚି
ଦେଖିବାରେ ତୋରକେଶ କେମନ୍ତେ ହୋଇଛି ।
ଗଳାଇଣ ଛାଡ଼ିଥିଲି ତୋତେ ଜାନୁତଳେ
ସୁମରିଲୁ ପାସୋରିଲା କଥା ଏତେକାଳେ ।
ନଖେ ବିଦାରିଣ ତୋର ଛିଣ୍ଡାଇବି ଗଳା
ଆଜ ସେ ବିଧବା ଜାଣ ହୋଇବ ଦୁଃଶୀଳା
ଜୟଦ୍ରଥ ବୋଲେ ଭୀମା କଲୁ ସାତବେଣ୍ଟି
ସେହି ଅପମାନେ ମୁହିଁ ସେବିଲି ଧୂର୍ଜ୍ଜଟି ।
ପ୍ରସନ୍ନରେ ବର ଦେଲେ ମୋତେ ତ୍ରିଲୋଚନ
ପାର୍ଥକୁ ଛାଡ଼ି ମାରିବୁ ତୁହି ଚାରିଜଣ ।
ସନ୍ତୋଷରେ ଏହିବର ଦେଲେକ ଈଶାନ
ଏକମାତ୍ର ସମରେ ନ ଜିଣିବୁ ଅର୍ଜ୍ଜୁନ ।
ଭୀମ ବୋଲେ ଈଶ୍ୱରଙ୍କୁ ସେବିଲୁ ପାପିଷ୍ଠ
ପାର୍ଥେ ଜିଣିବାକୁ କିପାଁ ନ କଲୁ ସନ୍ତୁଷ୍ଟ ।
ଜୟଦ୍ରଥ ବୋଇଲାକ ପାର୍ଥେ ଜିଣିବାକୁ
ବୋଲୁଁ ସେବୋଇଲେ ସରି ନୁହଇ ମୁଁତାକୁ ।
ପାର୍ଥକୁ ଈଶ୍ୱର ଯେବେ ସମର୍ଥ ନୋହିଲେ
ମାନବ ହୋଇଣ ମୁହିଁ ଜିଣିବି କି ଭଲେ ।
ଭୀମସେନବୋଲେ ତୁହି ଏହାଯେବେ ଜାଣୁ
ଦୁର୍ଯ୍ୟୋଧନ ଆଗେ ମୂଢ଼ କିପାଁ ନବଖାଣୁ ।
ଈଶ୍ୱର ଦେବତା ଯାକୁ ଯୁଦ୍ଧେ ନୁହେଁ ସରି
ତାହାର ସଙ୍ଗରେ ତୁମେ ଯୁଝିବ କିପରି ।

ଜୟଦ୍ରଥ ବୋଲେମୋତେ ବର ଦେଲେହର
ତୁମ୍ଭ ଚାରିଙ୍କର ମୃତ୍ୟୁ ମୋହର ହସ୍ତର ।
ତୁମ୍ଭେମାନେ ମଲେ ଏକା ହୋଇବ ଅର୍ଜ୍ଜୁନ
ଭୀଷ୍ମଦ୍ରୋଣ ଆବୋରିଲେ ଘେନିବେଜୀବନ ।
ଭୀମସେନ ବୋଲେତୋତେ ବରଦେଲେ ହର
ତୋହର ମରଣ ନିଶ୍ଚେ ମୋହର ହସ୍ତର ।
ଜୟଦ୍ରଥ ବୋଲେ ଭୀମ କହଇ ମୁଁତୋତେ
ମୋହରମରଣ କାହିଁ ଲୋଡୁ ତୋରହସ୍ତେ ।
ଲକ୍ଷେବଳ ଧନୁରେ ସେ ନାରାଚ ପୂରାଇ
ଏକା ପ୍ରହାରକେ ଶିର ଯେ ପାରେ ଛିଣ୍ଡାଇ ।
ମୋମୁଣ୍ଡ ଛିଡ଼ିଣ ଯେବେ ଭୂମିରେପଡ଼ିବ
ପୁନରପି ସେହି ମୁଣ୍ଡ କନ୍ଧରେ ଲାଗିବ ।
କନ୍ଧରୁ ଛିଡ଼ିଣ ମୁଣ୍ଡ ତଳେ ନ ପଡ଼ିବ
ଅନ୍ତରୀକ୍ଷ ମାର୍ଗେ ମୁଣ୍ଡ ଉଡ଼ାଇଣ ନେବ ।
ମୋର ପିତା ତପକରେ ଅନ୍ଧକର ତୀର୍ଥେ
ସେ ମୁଣ୍ଡ ପଡ଼ିବ ଯାଇ ତାହାଙ୍କରହସ୍ତେ ।
ନୟନ ବୁଜିଣ ତପ କରୁଛନ୍ତି ତାତ
ମୋ ମୁଣ୍ଡପଡ଼ିବ ଯେବେଯାଇ ତାଙ୍କହସ୍ତ ।
ଧ୍ୟାନଭଗ୍ନ ହୋଇଣ ସେ ଚକ୍ଷୁକୁ ମେଲିବେ
ଭସ୍ମ ହୁଅ ବୋଲି ତହୁଁ ଅଭିଶାପ ଦେବେ ।
ପିତାଭସ୍ମ ବୋଲନ୍ତେ ଯେ ଜଳିବ ମୋଶିର
ଏତେବାଗେ ଆରେଭୀମ ମୃତ୍ୟୁ ହେବମୋର ।
ଭୀମ ବୋଇଲା ପ୍ରତିଜ୍ଞାଦେଖ ଆରେମୋର
କେଉଁପରି ରକ୍ଷା ତୋତେ କରିବେ ଈଶ୍ୱର ।
ଏହା କହି ଭୀମ ଗଦା ପିଟନ୍ତେ ରଥରେ
ଜୟଦ୍ରଥ ରଥୁ ଡ଼େଇଁ ପଡ଼ିଲା ଭୂମିରେ ।
ଗଦାବର ପ୍ରହାରିଲା ଯହୁଁ ଭୀମସେନ
ବଳ ଅଶ୍ୱ ସାରଥି ତା ହୋଇଗଲା ଚୂର୍ଣ୍ଣ ।
ଭୀମସେନ ଡ଼ାକଦିଏ ଜୟଦ୍ରଥ ରହ
ହର ବର ଦେଇଛନ୍ତି ଯୁଝ ମୋର ସହ
ପଳାଇଣ ଜୟଦ୍ରଥ ନ ଚାହେଁ ଲେଉଟି
ରାଜାମାନଙ୍କୁ ଗୋଡ଼ାଇ ଭୀମସେନ ପିଟି ।
ମନ୍ଦର ପର୍ବତ ପ୍ରାୟ ଭୀମସେନ କାୟ
ଗଦା ଦୁଇ ଦିଶଇ ଯେ ଶାଳବୃକ୍ଷ ପ୍ରାୟ ।
ଏକା ପ୍ରହାରକେ ଦଶ ବିଂଶ ରଥ ଭାଜି
ରଣ ଗୋଳ କରେ ଭୀମ ରାଗେ ଗଳଗାଜି ।
ସମରରେ ଯୋଦ୍ଧାମାନେ ପଳାବନ୍ତି ଡ଼ରେ
କେତେକ ଯୋଦ୍ଧା ପିଟନ୍ତି ଗଦା ଭୀମ ପରେ ।
ଗଦା ପଡ଼ନ୍ତେଣ ବୀର ପାତେ ବାମଅଙ୍ଗ
ପଡ଼ିଣ ଗଦା ମୁଦ୍‌ଗର ହୋଇଯାନ୍ତି ଭଙ୍ଗ ।

ବଜ୍ରର ସମାନ ଅଟେ ଭୀମ ଅଙ୍ଗ ଗୋଟି
ଯୋଦ୍ଧାମାନେ ବିନ୍ଧନ୍ତେଣ ଶରିରେ ନ ଫୁଟି ।
ବିକର୍ଣ୍ଣ ସଙ୍ଗରେ ହେଲା ଦୁର୍ଦ୍ଧକ୍ଷ ସମର
କାଳାଗ୍ନି ପ୍ରାୟେ ଦିଶନ୍ତି ତହିଁ ବେନି ବୀର ।
ମୁଦ୍‌ଗର ବୁଲାଇ ବୋଲେ ବୀର ଯେ ବିକର୍ଣ୍ଣ
ରେ ଦୁର୍ଦ୍ଧକ୍ଷ ଆଜି ତୋର ଘେନିବି ଜୀବନ ।
ଗିରିବର ତେଜି ଆଶ୍ରା ବୃକ୍ଷକୁ ତୁ କଲୁ
ଆପଣାର କୁଳରେ ତୁ କାଳି ଲଗାଇଲୁ ।
ବିକର୍ଣ୍ଣ ପ୍ରତିଜ୍ଞା ଶୁଣି ବୋଲଇ ଦୁର୍ଦ୍ଧକ୍ଷ
ପଡ଼ିଲୁ ସଂଗ୍ରାମେ ଆଜି ହୋଇଲୁ ନିରେଖ ।
ଏତେଦିନେ ତୁହି ଆସି ମୋ ମୁଖେ ପଡ଼ିଲୁ
ରକ୍ଷାକର୍ତ୍ତା କେହି ନାହିଁ ଅରକ୍ଷ ହୋଇଲୁ ।
ଗଦାକୁ ବୁଲାଇ ବୋଲେ ରହ ଆହେ ଭାଇ
ଆକର୍ଷି ପ୍ରହାର କଲା ରଥ ପରେ ନେଇ ।
ବଜ୍ର ପ୍ରହାରେ ଯେସନେ ହୁଏ ଗିରିବର
ବିକର୍ଣ୍ଣର ରଥ ଭାଙ୍ଗି ହେଲା ସେ ପ୍ରକାର ।
ସଞ୍ଜୟନନ୍ଦନ ପାଦଗତି କରି ଉଠି
ଦୁର୍ଦ୍ଧକ୍ଷ ଉପରେ ଗଦା ଆକର୍ଷିଣ ପିଟି ।
ଦୁର୍ଦ୍ଧକ୍ଷ ପରେ ପଡ଼ିଲା ଗଦାବର ବେନି
ରଣଝଣ ଶବଦରେ ଉଠିଲା ବହନି ।
ଦୁହିଙ୍କର ଗଦାବାଜି ହେଲା ମସିଗୁଣ୍ଡା
ଗରଜଇ ସମରେ ସେ କଉରବ ଷଣ୍ଢା ।
ରଣଗୋଳ କରନ୍ତି ସେ ବେନି ମାଲବନ୍ଧ
ମୁଥେ ମୁଥ ପ୍ରହାରନ୍ତି ହୋଇ ଅତି କ୍ରୋଧ ।
ରୋମେ ରୋମେ ଗଳିଣ ଯେ ବହଇ ଶୋଣିତ
ଦୁହେଁ ଏକତ୍ୱ ହୋଇଣ ମାଲବନ୍ଧେ ବ୍ୟସ୍ତ ।
ଯାମଳା ବୃକ୍ଷ ପ୍ରାୟେକ ନ ଯାନ୍ତି ବାରଣ
ଦୁର୍ଦ୍ଧକ୍ଷକୁ ହରାଇଲା ବିକର୍ଣ୍ଣ ଯେ ଜାଣ ।
ଦୁର୍ଦ୍ଧକ୍ଷ ବୀରକୁ ତଳେ ପକାଇ ବିକର୍ଣ୍ଣ
ହୃଦରେ ମାଡ଼ିବସିଲା କରିଣ ଗର୍ଜ୍ଜନ ।
ଡ଼ାହାଣେ ମୁଥ ଉଞ୍ଚାଇ ବାମେ ଧରି ଚୋଟି
ବିଦାରିବି ବକ୍ଷ ଆଜି ପଡ଼ିଲୁ ଭାଇଟି ।
ଦୁର୍ଦ୍ଧକ୍ଷର ଅବସ୍ଥାକୁ ଦେଖିଣ ଶିଖଣ୍ଡୀ
ବିକର୍ଣ୍ଣ ଉପରେ ନେଇ ପ୍ରହାରି ଭୂଷଣ୍ଡୀ ।
ନିଘାତ ଶବଦ ଜାଣି ଶିରରେ ବାଜିଲା
ଘାଏଣ ବକର୍ଣ୍ଣ ବୀର ଢ଼ଳିଣ ପଡ଼ିଲା ।
ତହୁଁ ଉଠିଣ ଦୁର୍ଦ୍ଧକ୍ଷ ସମର ଚାହିଁଲା
ଧାଇଁ ଯାଇଁଣ କୁମାର କୃପାଣ ଧଇଲା ।
ବିକର୍ଣ୍ଣ ଉପରେ ନେଇ ପିଟିଲା ବହନ
ବେନିଖଣ୍ଡ ହୋଇ ପଡ଼ିଗଲା ଯେ ବକର୍ଣ୍ଣ ।

ବିକର୍ଣ୍ଣର ହତ ଦେଖି ଦ୍ରୁପଦ ନନ୍ଦନ
ଜୟଶଙ୍ଖ ଧ୍ୱନି କଲେ ଯେ ଧୃଷ୍ଟଦ୍ୟୁମନ।
ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ତ୍ରିଗର୍ତ୍ତର ତୁଲେ ଯୁଦ୍ଧ କରେ ଅଭିମନୁ।
ସମରେ ଅନିର୍ବାର ସେ ପଣ୍ଡୁରାଜା ନାତି
ଏକାକୀ ସମରେ ସେହି ଲକ୍ଷେବଳ ମନ୍ଥି।
ତିନିସସ୍ର ରଥୀ ସେହୁ ନାଶକଲା ହେଳେ
ଦ୍ୱିତୀ ଅର୍ଜ୍ଜୁନ ପ୍ରାୟେକ ଦିଶେ ରଣଗୋଳେ।
ମନ୍ଦର କରିଲା ଯେହ୍ନେ ସମୁଦ୍ର ମନ୍ଥନ
ତେହ୍ନେ କୁରୁସୈନ୍ୟ ମନ୍ଥେ ବିରାଟ ନନ୍ଦନ।
କାଶୀରାଜା ତୁଲେ ତାର ସମର ବହୁତ
ନିଦାଘ ବାଣ ବିନ୍ଧଇ ବୀରବର ଶ୍ୱେତ।
ସହସ୍ରେକ ରଥୀ ସେହୁ ମାଇଲା ସମରେ
ଗଜ ଯୋଦ୍ଧା ଦୁଇସସ୍ର ପଡ଼ିଲେ ସେଠାରେ।
ତିନିସସ୍ର ଅଶ୍ୱଯୋଦ୍ଧା ମାଇଲେକ ରଣେ
ଅକଳିତ ସାଗରକୁ ମନ୍ଥେ ଏକା ଜଣେ।
ଅସ୍ତ୍ର ଶସ୍ତ୍ର ନାରାଚ ଯେ ବିନ୍ଧେ ଗଳଗାଜି
ଦେଖିଣ କାଶୀଈଶ୍ୱର ପଳାଇଲା ଭାଜି।
ରାଜାର ଅଭାବେ ସୈନ୍ୟ ପଳାଇଲେ ଛାଡ଼ି
ବହୁଶର ବିନ୍ଧେ ଶ୍ୱେତ କରି ଘୋର ରଡ଼ି।
ପାଞ୍ଚସହସ୍ର ରଥୀ ଯେ ଦୁଇସସ୍ର ଯୋଧୀ
ଏକମୁଖୀ ହୋଇ ବୀର ତହିଁ ଶର ବିନ୍ଧି।
ଏତେକ ସୈନ୍ୟ ମାଇଲା ସେହି ଏକାଜଣେ
କନାଉଜ ଦେଶ ରାଜା ପଡ଼ିଲାକ ରଣେ।
ସାଧୁ ସାଧୁ ବୀର ତୁହି ବିରାଟ ନନ୍ଦନ
ତୋହର ମହିମା ଅଟେ ସଂସାରରେ ଧନ୍ୟ।
ପ୍ରତ୍ୟକ୍ଷରେ କାର୍ତ୍ତିକେୟ ପରାୟେ ସେ ଦିଶି
ସାଧୁ ସାଧୁ ବୋଲି ଦୁଇବଳରେ ପ୍ରଶଂସି।
ଭୀଷ୍ମ ଅର୍ଜ୍ଜୁନ ସମର ହୁଏ ଘୋରତର
ଜ୍ୱଳାବଳି ବାଣଙ୍କରେ ଦିଶେ ଅନ୍ଧକାର।
ଭୀଷ୍ମଙ୍କ ଯୁଦ୍ଧ କହିବା ଶକ୍ତି ଅଛି କାହିଁ
କ୍ଷତ୍ରୀହୋଇ ତାଙ୍କଆଗେ ରହିବ କେଯାଇ।
କାମଦେବ ବୋଲିକରି କାଉଁରୀର ରାଜା
ଶାର୍ଦ୍ଦୂଳ ବାହନ ତାର ଅଟେ ମହାତେଜା।
ହାତକରେ କୁନ୍ତ ଆର ହାତକରେ କାତି
ଅନଙ୍ଗାବତାର ପ୍ରାୟେ ଦିଶେ ତାର ଜ୍ୟୋତି।
ଭୀଷ୍ମ ଅର୍ଜ୍ଜୁନ ଦୁହିଙ୍କ ରଣ ମଧ୍ୟସ୍ଥାନେ
ଭୀଷ୍ମଙ୍କ ଅଗ୍ରତେ ଆସି ଓଗାଳେ ବହନେ।
ଭୀଷ୍ମବୋଇଲେ ତୁକିପାଁ ଆସୁ ମୋଆଗରେ
ଅର୍ଜ୍ଜୁନ ବ୍ୟତୀତ ଯୁଦ୍ଧ ନ କରେ କାହାରେ।
ଶୁଣ ହେ ଗାଙ୍ଗେୟ ବୋଲେ ରାଜା କାମପାଳ
ଦଣ୍ଡେକ ମାତ୍ର ରହିଣ ମୋ ରଣ ସମ୍ଭାଳ।
ଏହା ଶୁଣିକରି ଭୀଷ୍ମ ହେଲେ କୋପଅଗ୍ନି
ରୁଦ୍ରାଗ୍ନି ପ୍ରାୟେକ ଶର ପେଷିଲେ ସେ ତିନି।
କାମପାଳ ଆରୋହିଣ ଥିଲାକ ଶାର୍ଦ୍ଦୂଳ
ଭୀଷ୍ମଙ୍କ ଶର ପଡ଼ିଲା ଯାଇ ବକ୍ଷସ୍ଥଳ।
ବକ୍ଷସ୍ଥଳେ ପଡ଼ି ଶର କଲା ବେନିଖଣ୍ଡ
କନ୍ଧୁ ଛିଡ଼ି ତଳେ ତାର ନ ପଡ଼ିଲା ମୁଣ୍ଡ।
କନ୍ଧର ଉପରେ ତାର ରହିଅଛି ଶିର
ସେ ମୁଣ୍ଡ ବୁଲଇ ଯେହ୍ନେ ଚକ୍ର କୁରାଳର।
ଅଧରରେ ଦନ୍ତଚାପି ତରାଟିଣ ଡୋଳା
ନାଚଇ କବନ୍ଧ ତହିଁ ହୋଇ କୁତୁହଳା।
ଭୀଷ୍ମାର୍ଜ୍ଜୁନ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଲେ
କୁତୂହଳେ ସେହି ଶର ବିନ୍ଧି ନ ପାରିଲେ।
ଅଗସ୍ତିଙ୍କୁ ପୁଚ୍ଛା କଲେ ବୈବସ୍ୱତ ମନୁ
ଶରେଛେଦିଲେ କିପାଁ ନପଡ଼େ ତାରତନୁ।
କେବଣ ମହାତ୍ମା ସେହି ଥିଲାଟି ପୂର୍ବରେ
କବନ୍ଧ ହୋଇ ନାଚଇ ଏ ରଣ ମଧ୍ୟରେ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ସତ୍ୟଯୁଗେ ବିଶ୍ୱାବସୁ ନାମେଣ ନୃପତି।
ବିଶ୍ୱାବସୁ ପୁତ୍ର ଦକ୍ଷ ମାରକଣ୍ଟ ବୋଲି
ଦିଗବିଜେ କରେ ଘେନି ଦକ୍ଷକରେ ଛୁରୀ।
କାର୍ତ୍ତିକର କୃଷ୍ଣପକ୍ଷ ଅମାବାସ୍ୟା ଦିନ
ପଣ୍ଡିତ ବାର ନକ୍ଷତ୍ର ସ୍ୱାତୀ ବିଦ୍ୟମାନ।
ସେହିପରି ବିଶ୍ୱାବସୁ ପୁତ୍ରକୁ ହକାରି
ବୋଲେ ବନୁ ଏକଗଣ୍ଡା ଖୋଜିଆଣ ମାରି।
କାମ୍ୟଶ୍ରାଦ୍ଧ କରିବାହିଁ ପିତୃକାର୍ଯ୍ୟ ଆଜ
ପିତାଠାରୁ ଆଜ୍ଞାପାଇ ଚଳଇ ଆତ୍ମଜ।
ଅଶ୍ୱେକ ଆରୋହି କରେ ଧରି ଶରକାଣ୍ଡ
ବନସ୍ତରେ ଭ୍ରମଇ ସେ ଦକ୍ଷ ମାରକଣ୍ଡ।
ଅନେକ ବନସ୍ତ ଗିରି କନ୍ଦର ଖୋଜିଲା
ବୁଲି ବୁଲି କାହିଁ ଗଣ୍ଡାଜୀବ ନ ପାଇଲା।
ନିଶି ଉପବାସେ ସେହି ବୁଲନ୍ତେଣ ଶ୍ରମେ
ଯାନ୍ତେଣ ଦେଖିଲା ସେହୁ ଏକଇ ଆଶ୍ରମେ।
ବାଳଖିଲ୍ୟା ବଂଶେ କୃପାଜଳ ମହାଋଷି
ବହୁକାଳୁ ଗଣ୍ଡାଟିଏ ଛନ୍ତି ସେହି ପୋଷି।
ଋଷି ଯାଇଛନ୍ତି ସନ୍ଧ୍ୟାକରିବା ନିମନ୍ତେ
ଗଣ୍ଡା ଚରୁଥିଲା ବୀରସୁର ପରବତେ।
ଦେଖିଣ ଧାଇଁଲା ମାରକଣ୍ଠ ବୀରମଣି
ଗୋଡ଼ାଇ ଗୋଡ଼ାଇ ତାକୁ ପକାଇଲା ହାଣି।

ଖଡ଼ଗ ପ୍ରହାରେ ଗଣ୍ଡା ହେଲା ବେନିଖଣ୍ଡ
ଧନୁରେ ଭାର କରିଣ ଆଣଇ ମାର୍କଣ୍ଡ ।
କୃପାଜଳ ସନ୍ଧ୍ୟା ସାରି ଲେଉଟି ଆସିଣ
ଦେଖିଲେ ଗଣ୍ଡାଟି ବୀର ଘେନିଯାଏ ପୁଣ ।
କୃପାଜଳ ବୋଇଲେ ଏ ଆମ୍ଭର ଗଣ୍ଡାଟି
କିପାଁରେ ଦୁଷ୍ଟ ହାଣିଲୁ ଏହାର ମୁଣ୍ଡଟି ।
ବିଦ୍ୟାଧର ହୋଇ ତୁହି ବଡ଼ ମନ୍ଦ ଅଟୁ
ଭାରତ ଯୁଦ୍ଧରେ ଭୀଷ୍ମ ତୋର ମୁଣ୍ଡ କାଟୁ ।
ଭୀଷ୍ମ ଅରଜୁନ ବେନି ଯୁଦ୍ଧଭୂମି ମଧ
ଖେଚର ଭୂଚର ହୋଇ ନାଚିବୁ କବନ୍ଧ ।
ମୋହର ଶାପ ତୋତେରେ ଫଳିବ ପ୍ରତ୍ୟକ୍ଷ
ପୁଣି ଗଣ୍ଡାଭାର ଥୋଇ ବିସ୍ୱାବସ୍ତୁ ବକ୍ଷ ।
ବିନୟ ହୋଇଣ ତହୁଁ ମାର୍କଣ୍ଡ କହଇ
ଏ ଶାପରୁ କି ପ୍ରକାରେ ମୁକ୍ତ ହେବି ମୁହିଁ ।
ତା ଶୁଣି ବୋଇଲେ କୃପାଜଳ ମହାଋଷି
ଗଣ୍ଡା ଗୋଟି ନେଇ ତୋର ବାପକୁ ଦିଅସି ।
ପିତୃଲୋକଙ୍କୁ ତୋଷୁ ସେ ଅମାବାସ୍ୟା ଶ୍ରାଦ୍ଧେ
ତୁହି ମୁକ୍ତ ହେବୁ ମହାଭାରତର ଯୁଦ୍ଧେ ।
ଶତେବାର ଏହି ଯୁଦ୍ଧ ସରିବା ପର୍ଯ୍ୟନ୍ତେ
ଭୀଷ୍ମ ଶିର ଛେଦି ଦଣ୍ଡ ଦେଉଥିବେ ତୋତେ ।
ମୁକ୍ତି ହେବୁ ଶତେବାର ଶିରଚ୍ଛେଦ ହେଲେ
ବିଶ୍ୱାବସୁ ଦରଶନ ପାଇବୁ ତୁ ଭଲେ ।
ଶୁଣି ମାରକଣ୍ଡ ଗଣ୍ଡା ଘେନି ଚଳିଗଲା
ପିତାଙ୍କ ଅଗ୍ରତେ ଯାଇ ସମସ୍ତ କହିଲା ।
ବନକନ୍ଦରରେ ଦେବ ଗଣ୍ଡା ନ ପାଇଲି
କୃପାଜଳଙ୍କର ଗଣ୍ଡା ନ ଜାଣି ମାଇଲି ।
କୋପେ ମୋତେ ଶାପଦେଲେ କୃପାଜଳଋଷି
ମଧ୍ୟସ୍ୱର୍ଗେ ଜାତହୁଅ ହୋଇଣ ମାନୁଷି ।
ଭାରତ ଯୁଦ୍ଧେପଶିବୁ ତୁହି ଅନିମିତ୍ତେ
କବନ୍ଧରୂପେ ନାଚିବୁ ଭୀଷ୍ମ ଶରାଘାତେ ।
ସେ ଯୁଦ୍ଧେ ଶିରଚ୍ଛେଦନ ହେବ ଶତେଘାନ୍ତି
ତେବେ ସେ ଆସିବୁ ତୁହି ସ୍ୱର୍ଗ ବାରସ୍ୱତୀ ।
କୃପାଜଳ ଋଷିଙ୍କର ଶାପ ଅଛି ପୂର୍ବେ
ସେହି ମାରକଣ୍ଡ ଦକ୍ଷ କାମପାଳ ଏବେ ।
ଭୀଷ୍ମଙ୍କ ନାରାଚେ ସେହି ମୁକତି ପାଇଲା
ସ୍ୱର୍ଗପୁରେ ଯାଇ ବିଶ୍ୱାବସୁଙ୍କୁ ଭେଟିଲା ।
ସୁଜ୍ଞଜନମାନେ ଏହା ହୃଦୟରେ ଭାବ
ଶ୍ରୀମହାଭାରତ ଏହୁ ସମରେ ଦୁର୍ଲ୍ଲଭ ।
କବନ୍ଧ ତଳେ ପଡ଼ିଣ ଗଡ଼େ ଯେତେବେଳେ
ତହିଁଥିବା ସୈନ୍ୟ ସର୍ବେ ଆଶ୍ଚର୍ଯ୍ୟେ ଚାହିଁଲେ ।
ଧନୁଧରି ବିନ୍ଧୁଥିଲେ ବୀର ଧନଞ୍ଜୟେ
କବନ୍ଧ ନାଚନ୍ତେ ପାର୍ଥ ତହିଁକି ଅନାଏ ।
ଏତିକି ଛିଦ୍ର ପାଇଣ ଭୀଷ୍ମ ମହାରଥୀ
ଦଶସସ୍ର ଯୋଦ୍ଧାମାରି ପଶ୍ଚିମ ମୂରତି ।
ରଥୀ ମହାରଥୀ ହସ୍ତୀ ଯୋଦ୍ଧା ଆଦି ଲୋଟି
ଯୁଦ୍ଧଭୂମିରେ ରକତ କର୍ଦ୍ଦମ ଯେ ଉଠି ।
ଜୟ ଶଙ୍ଖ ବାଇ ଭୀଷ୍ମ ହେଲେ ପୃଷ୍ଠଗତି
ଅର୍ଜୁନ ପୁଛିଲେ ଶୁଣ ଦେବ ଶିରୀପତି ।
ଭୀଷ୍ମଦେବ ଯୁଦ୍ଧ ତ୍ୟାଗକଲେ କାହିଁପାଇଁ
ଗୋବିନ୍ଦ ବୋଇଲେ ବୀର ପାର୍ଥ ଶୁଣ ତୁହି ।
ମହାରଥୀ ଭୀଷ୍ମ ତୋର ଦଶସସ୍ର ରଥୀ
ମାରିତଳେ ଲୋଟାଇଲେ ଦେଖ ଦେଇ ଦୃଷ୍ଟି ।
ରଥର ବାମ ଡାହାଣେ ଦେଖ ବୀର ପାର୍ଥ
ପଦାତି ସହ ପଡ଼ିଲେ ଦଶସସ୍ର ରଥ ।
ଚାରିସସ୍ର ଗଜ ଯୋଦ୍ଧା ରଥୀ ସସ୍ର ତିନି
ପଦାତି ଯେ ଦଶସସ୍ର ଅୟୁତେ ସଇନି ।
ଦେଖି ସମ୍ଭ୍ରମୀଭୂତ ହେଲା ବୀର ଧନଞ୍ଜୟ
ତିନି ଭୁବନେ ପାଇଲି ଲଜ୍ଜା ଅତିଶୟ ।
ମୁହିଁ ମରାଇଲି ବନ୍ଧୁ ସୋଦର ସମସ୍ତ
ଆବର ଜୀବନ ମୋର କିସ ପୁରୁଷାର୍ଥ ।
ନିର୍ଲ୍ଲଜ ହୃଦୟ କିପାଁ ଯାଇନାହିଁ ଫାଟି
ଲଲାଟେ କର ମାରିଣ କାନ୍ଦଇ କିରୀଟୀ ।
ତୁହି ଜୀବନର ନାଥ ଜଗଜ୍ଜନଙ୍କର
ନିରେଖ ହୋଇଲି ମୁହିଁ ଦେଖନ୍ତେ ତୋହର ।
ହରି ରଣ ଜୟକରି ଗଲେ କଉରବେ
ହସ୍ତିନାରେ ପଶିଲେ ସେ ବଡ଼ଇ ସମ୍ଭର୍ବେ ।
ଗୋବିନ୍ଦ ବୋଇଲେ ତୁ ନ କାନ୍ଦ ଫାଲଗୁନି
ଦେଖ ଆରେ ଧନଞ୍ଜୟ କୌରବ ସଇନି ।
ତୁହି ଜଣେ ସିନା ତାଙ୍କୁ ନ ପାରିଲୁ ରଣେ
ଭୀଷ୍ମ ମହାରଥୀଙ୍କର ସେନାପତିଗଣେ ।
ଅଭିମନ୍ୟୁ ଶିଖଣ୍ଡୀ ସେ ଶ୍ୱେତ ଧୃଷ୍ଟଦ୍ୟୁମ୍ନ
ଏମାନେ ମାଇଲେ ତେଣେ ବହୁତର ସୈନ୍ୟ ।
ଦେଖ ହେ ଅର୍ଜୁନ ବୋଲି ଗୋବିନ୍ଦ ବୋଇଲେ
ମରିଥିବା କୁରୁସୈନ୍ୟ ଦେଖାଇଣ ଦେଲେ ।
ତାଳେକ ଉସର୍ଗେ ପଡ଼ିଅଛନ୍ତି ସଇନି
ତାହା ଦେଖି ଆନନ୍ଦିତ ହୋଇଲେ ଫାଲ୍‌ଗୁନି ।
ଦେବଦତ୍ତ ଶଙ୍ଖଶବ୍ଦ କଲେ ଦେବ ହରି
ହରଷେ ଚଳିଲେ ସୈନ୍ୟ ଇନ୍ଦ୍ରପ୍ରସ୍ଥ ପୁରୀ ।
ସ୍ନାନ ଦେବାର୍ଚ୍ଚନ ଆଦି କଲେ ଯୋଦ୍ଧାମାନେ
ଅନେକ ଉତ୍ସବ ହେଲା ହସ୍ତିନା ଭୁବନେ ।

ଭୀଷ୍ମେ ପ୍ରଶଂସା କରଇ ରାଜା କୁରୁନାଥ
ଧନ୍ୟ ଧନ୍ୟ ଭୀଷ୍ମଦେବ ଶାନ୍ତନୁଙ୍କ ସୁତ ।
ମୋଠାରେ ଅଛି ଯଦ୍ୟପି ଏଡ଼େକ ସଦୟ
ତୁମ୍ଭର ପ୍ରସାଦେ ମୋର ଯିବ ସର୍ବଭୟ ।
ଦିନକରେ ବିନାଶିଲ ଦଶସସ୍ର ରଥୀ
ଦଶଦିନ ଯୁଦ୍ଧକଲେ ପାଣ୍ଡବେ କି ବର୍ତ୍ତି ।
କୃଷ୍ଣ କଥାରେ ପାଣ୍ଡବେ କଲେ ପ୍ରତିଆଶା
ପାଣ୍ଡବେ ମରିବେ ନାହିଁ କୃଷ୍ଣର ଭରସା ।
ଏପରି ଭୀଷ୍ମେ ପ୍ରଶଂସା କରେ କୁରୁରାୟ
ଏବେ ଆସି ହୋଇଲାକ ସମ୍ପଦ ସମୟ ।
ଏକାଳେ ସଞ୍ଜୟେ ପୁଚ୍ଛେ ଅନ୍ଧ ନରନାଥ
ଭୀଷ୍ମଙ୍କର ପ୍ରଶଂସା ତ ଶୁଭୁଛି ବହୁତ ।
ସଞ୍ଜୟ ବୋଇଲେ ତୁମ୍ଭେ ଶୁଣ ଧୃତରାଷ୍ଟ୍ର
ଏଣିକି ଘଟିବ ରାଜା ତୋତେ ବଡ଼ କଷ୍ଟ ।
ଦୁଇକ୍ଷୌଣି ଯୋଦ୍ଧା ମଲେ ଦୁଇଦିନ ରଣେ
ଭୀଷ୍ମଙ୍କୁ ପ୍ରଶଂସା ରାଜା କରୁଛନ୍ତି ଏଣେ ।
ତୋର ପୁତ୍ର ଦୁର୍ଦ୍ଧକ୍ଷ ଯେ ପଶିଲା ଶରଣେ
ନ ସସ୍ର ଯୋଦ୍ଧା ମାଇଲା ସେହି ଏକଦିନେ ।
ଦ୍ରୁପଦସୁତ ଶିଖଣ୍ଡୀ ଅଟେ ମହାରଥୀ
ପାଞ୍ଚସସ୍ର ଯୋଦ୍ଧା ସେହି ମାରେ ଏକ ଘାନ୍ତି ।
ଶ୍ୱେତକୁମର ବୋଲିଣ ବିରାଟର ବାଳ
ବାରସସ୍ର ମାଇଲେ ସେ ରଥୀ ଏକାବେଳ ।
ସମରେ ପଶିଲା ଯାଇ ସେ ଧୃଷ୍ଟଦ୍ୟୁମନ
ତେରସସ୍ର ରଥୀଙ୍କୁ ସେ କରିଲା ନିଧନ ।
ପାର୍ଥର ପୁତ୍ର ଅଟଇ ନାମଅଭିମନ୍ୟୁ
ଆଠସସ୍ର ନାଶିଲା ସେ ହୋଇ ବାଳସୁନୁ ।
ଘଟଉତ୍କଚ ନାମରେ ହିଡ଼ିମ୍ବୀ ନନ୍ଦନ
ଏକଦିନ ମାଇଲା ସେ ଅଇବ୍ରତେ ସୈନ୍ୟ ।
ଅସଂଖ୍ୟ ଯୋଦ୍ଧା ପଡ଼ିଲେ କଳନା ନୁହଇ
କେକେଣେ ପଡ଼ିଅଛନ୍ତି ସଂଖୋଳା ଯେନାହିଁ ।
କହିତ ନୁହଇ ସ୍ୱାମୀ ଭୀମର ମହିମା
କୋଡ଼ିଏ ସହସ୍ର ଯୋଦ୍ଧା ମାଇଲାଟି ଭୀମା ।
ସଞ୍ଜୟ ମୁଖରୁ ରାଜା ଏହି ବାକ୍ୟ ଶୁଣି
ହରଷ ଛାଡ଼ି ବିସ୍ମୟେ ମନମଧ୍ୟେ ଗୁଣି ।
କାନ୍ଦଇ ରାଜନ ଶିରେ କରତାଡ଼ି ପୁଣି
ସଞ୍ଜୟ ବହୁ ପ୍ରବୋଧ କରେ ନୃପମଣି ।
ଏସନକ ସମୟରେ ହୋଇଲା ପ୍ରଭାତ
ଯେ ଯାହାର ସମୟରେ ହେଲେ ସର୍ବେରତ ।
ଶର ସନ୍ଧାନ ଉଦ୍‌ଯୋଗେ ପାହିଗଲା ରାତି
ସ୍ନାନ ଆଦି ଶେଷକଲେ ଗଙ୍ଗାଙ୍କ ସନ୍ତତି ।
ଦଣ୍ଡ ସାଜ ଦଣ୍ଡ ସାଜ ଶୁଭିଲା ଚହଳ
ରଥ ଗଜ ଅଶ୍ୱ ସଜ କଲେ ସୈନ୍ୟବଳ ।
ବାଜଇ ଟମକ ଭେରୀ ଉଡ଼ଇ ନିଶାଣ
ମର୍ଦ୍ଦଳ ମହୁରୀ ଆଦି ବୀର ବାଦ୍ୟମାନ ।
ଉହାଡ଼ନ୍ତି ଛତ୍ରମାନ ଉଡ଼ାନ୍ତି ଆଲମ୍ୱେ
ତର୍ଜନ୍ତି ଗର୍ଜନ୍ତି ବୀରେ ଯିବାରେ ସମ୍ଭର୍ବେ ।
ବହୁ ଅଳଙ୍କାର ଘେନି ମାନଚକ୍ରବର୍ତ୍ତୀ
ବିଜେ କଲେ ସମ୍ଭର୍ବରେ ଭୀଷ୍ମଙ୍କର କତି ।
ବହୁରତ୍ନେ ଭୂଷଣ ଯେ କଲେ ଭୀଷ୍ମକାୟେ
ଭୀଷ୍ମ ଦିଶିଲେ ତ୍ରିପୁର ଅନ୍ତକର ପ୍ରାୟେ ।
ଭୀଷ୍ମଙ୍କର ରୂପ କାଳ ଅନଳ ସମାନ
ଭୟେ ବୁଜି ହୋଇଗଲା ସୈନ୍ୟଙ୍କ ନୟନ ।
ଶ୍ରୀଭୁଜେ ଧଇଲେ ସସ୍ରବଳର କୋଦଣ୍ଡ
ଗୁଣଘୋଷ କରନ୍ତେ ଯେ କମ୍ପିଲା ବ୍ରହ୍ମାଣ୍ଡ ।
ଜୟ ଶଙ୍ଖ ଶବ୍ଦକଲେ ଭୀଷ୍ମ ମହାରଥୀ
ପୌଷ କୃଷ୍ଣ ଶନିବାର ପ୍ରତିପଦା ତିଥି ।
ମୃଗଶିରା ନକ୍ଷତ୍ର ଯେ ଶୁଭଲଗ୍ନ ବେଳ
ପରମ ଆନନ୍ଦେ ଭୀଷ୍ମ ଯୁଦ୍ଧେ ଅନୁକୂଳ ।
ଏଥୁଅନନ୍ତରେ ଶୁଣ ପାଣ୍ଡବଙ୍କ କଥା
ବିଷାଦ ଯୁଧିଷ୍ଠି ଦେଖି ସମର ବ୍ୟବସ୍ଥା ।
ପାଣ୍ଡବଙ୍କ ବଳମାନେ ଭାବନ୍ତି ବିଷାଦେ
ଭୀଷ୍ମଙ୍କ ଆଗେ ସମର୍ଥ ଅଛି କେହୁ ହାଦେ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାରଥି
ଯୁଧିଷ୍ଠିଙ୍କ ପଦ୍ମପାଦେ ପ୍ରଣମେ ତଡ଼ତି ।
ସ୍ୱାମୀ ଆଜି ସେନାପତି କର ଯେ ଆମ୍ଭଙ୍କୁ
କୁରୁବଳ ଜିଣିବି ମୁଁ ମାରିବି ଭୀଷ୍ମଙ୍କୁ ।
ଧୃତରାଷ୍ଟ୍ର ପଚାରିଲେ ଶୁଣ ହେ ସଞ୍ଜୟ
ଆଜିର ଯୁଦ୍ଧେ ହୋଇବ କେବଣ ଉପାୟ ।
ତୁ ମୋହର ମନ୍ତ୍ରୀ ଭୂତ ଭବିଷ୍ୟତ ଜ୍ଞାତା
ଗତ ଆଗତ କହିବା ତୁହି ସମରଥା ।
ଜୟ କି ଅଜୟ ହେବ ଆଜିର ସମର
ଏହା ଶୁଣିବାକୁ ଇଚ୍ଛା ହେଉଛି ମୋହର ।
ଧୃତରାଷ୍ଟ୍ର ବାକ୍ୟ ଶୁଣି କହନ୍ତି ସଞ୍ଜୟ
ଶୁଣ ଏବେ ସାବଧାନେ ଅମ୍ବିକା ତନୟ ।
ତୋହର ଆଗରେ ମୁହିଁ ଯାହା ବଞ୍ଚାଇଲି
ଗତ ଯୁଦ୍ଧର ବାରତା ଥୋକାଏ କହିଲି ।
ଶ୍ୱେତକୁମାର ବୋଲିଣ ବିରାଟ କୁମର
ସେନାପତି ହୋଇବ ସେ ଆଜିର ସମର ।
ବହୁଯୁଦ୍ଧ ହେବ ଆଜି ଶୁଣ ଧୃତରାଷ୍ଟ୍ର
ବହୁ ଅପଚୟ ଜାଣ ହେବ ତୋର ଥାଟ ।

ମଘଦେଶର ରାଜା ଯେ ନାମ ବୀରବାହୁ
ତିନିସସ୍ର ସୈନ୍ୟ ତୁଲେ ପଡ଼ିବେଟି ସେହୁ ।
ଅରବିନ୍ଦ ଦେଶ ରାଜା ଅଟେ ମାନଭଙ୍ଗ
ପଡ଼ିବ ନ ଲକ୍ଷ ଯୋଦ୍ଧା ତୁଲେ ରଣରଙ୍ଗ ।
କଳିଙ୍ଗ ଦେଶର ରାଜା ନାମ ବଜ୍ରକେତୁ
ପାଞ୍ଚକୋଟି ଯୋଦ୍ଧା ସହ ହେବତାର ମୃତ୍ୟୁ ।
ବିମଳାକ୍ଷ ଦେଶ ରାଜା ମଙ୍ଗଳନଉମି
ପାଞ୍ଚଲକ୍ଷ ଯୋଦ୍ଧା ତୁଲେ ପଡ଼ିବ ସେ ଭୂମି ।
କନାଉଜ ଦେଶ ରାଜା ନାମ ଚନ୍ଦ୍ରଧ୍ୱଜ
ତିନିସସ୍ର ଯୋଦ୍ଧା ତୁଲେ ପଡ଼ିବ ସେ ରାଜ ।
କାଞ୍ଚନ ଦେଶର ରାଜା ନାମ ଇନ୍ଦ୍ରଧ୍ୱଜ
ନବସସ୍ର ଯୋଦ୍ଧାତୁଲେ ପଡ଼ିବ ସେ ଆଜ ।
ମନ୍ଦର ଦେଶର ରାଜା ନାମ ବିରୁପାକ୍ଷ
ତାହାର ତୁଲେ ପଡ଼ିବେ ସଇନ ଯେ ଲକ୍ଷ୍ୟ ।
ଏମାନଙ୍କ ତୁଲେ ଯୋଦ୍ଧା ଅନେକ ଅଛନ୍ତି
ଅସଂଖ୍ୟ ପଡ଼ିବେ ତହିଁ ସୈନ୍ୟ ଅଶ୍ୱ ହାତୀ ।
ପଞ୍ଚଦଶ ଘଡ଼ିଯାଏ ହୋଇବ ସମର
ତୋର ସୈନ୍ୟ ଜାଣ ଏତେ ହେବ ଅପହାର ।
ତୁହି ଯାହା ପଚାରିଲୁ କହିଲି ମୁଁ ତାହା
ଏପରି ସମର ଆଜି ହେବ ନରନାହା ।
ଶୁଣ ଆହେ ଚଇତନ ସଞ୍ଜୟ ମହିମା
ସତ୍ୟଯୁଗରେ ଶୁଦ୍ରକ ନାମରେ ସେ ବ୍ରହ୍ମା ।
ଧୃତରାଷ୍ଟ୍ରକୁ ସଞ୍ଜୟ ଅଟେ ଦିବ୍ୟଚକ୍ଷୁ
ଗତ ଆଗତ ବାରତା ଜାଣଇ ପ୍ରତ୍ୟକ୍ଷୁ ।
ତେଣୁ ଧୃତରାଷ୍ଟ୍ର ତାକୁ ସକଳ ପୁଛନ୍ତି
ସମସ୍ତ ବିଷୟ ତାଙ୍କୁ ସଞ୍ଜୟ କହନ୍ତି ।
ଗାଲବ୍ୟନନ୍ଦନ ଭୂତ ଭବିଷ୍ୟତଜ୍ଞାତା
ତେଣୁ ବଖାଣଇ ଗତ ଆଗତ ବାରତା ।
ଶ୍ୱେତର ମହିମା ଯହୁଁ ଯୁଧିଷ୍ଠି ଶୁଣିଲେ
ସେଦିନ ଯୁଦ୍ଧରେ ତାକୁ ସେନାପତି କଲେ ।
ଅଷ୍ଟରତ୍ନ ଅଳଙ୍କାରେ କଲେ ବିଭୂଷଣ
ଶିରରେ ରତ୍ନ ମୁକୁଟ ବାନ୍ଧିଲେ ବହନ ।
ଶ୍ରୀକୃଷ୍ଣ ଯେପରି ପରିଜାତ ହରଣରେ
ତେସନକ ଦିଶେ ଶ୍ୱେତ ଏ ରଣ-ଭୂମିରେ ।
ତହୁଁ ଅର୍ଜୁନ ବୋଇଲେ ଯୁଧିଷ୍ଠିଙ୍କୁ ଚାହିଁ
ୟାଙ୍କୁ ସେନାପତି କଲେ କିଛି ହେବ ନାହିଁ ।
ଗୋବିନ୍ଦ ବୋଇଲେ ତୁହି ଶୁଣ ଫାଲ୍‌ଗୁନି
ଅନେକ ଧ୍ୱଂସିଲା କାଲି କୌରବ ସଇନି ।
ଏହି ଯେବେ ହୋଇଥାନ୍ତା କାଲି ସେନାପତି
କୌରବ ସଇନି ଆଉ ନ ଥାନ୍ତେ ବରତି ।

ଆପଣେ ରଥୁ ଓହ୍ଲାଇ ଦେବ ଜଗନ୍ନାଥ
ମୁକୁଟ ବାନ୍ଧିଲେ ନେଇ ଶ୍ୱେତବୀର ମାଥ ।
ଶ୍ୱେତକୁ ବହୁ ପ୍ରଶଂସା କରି ଏହିପରି
ଜୟଶଙ୍ଖ ବଜାଇଲେ ଦେବ ଦଇତ୍ୟାରି ।
ବହୁତ ସାନନ୍ଦ ହେଲେ ରାଜା ଯୁଧିଷ୍ଠିର
ଦେବଗଣେ ପୁଷ୍ପବୃଷ୍ଟି କଲେକ ଅପାର ।
ଶ୍ୱେତ ପ୍ରଣମିତ ହୋଇ କୃଷ୍ଣଙ୍କ ପୟରେ
ବୋଲେ କୌରବ ଜିଣିବି ତୁମ୍ଭ ପ୍ରସାଦରେ ।
ଭୀଷ୍ମ ଦ୍ରୋଣଙ୍କ ଛାମୁରେ କରିବି ମୁଁ ରଣ
ଉତ୍ତମ ସାରଥି ମୋତେ ଦିଅ ଏକଜଣ ।
ଗୋବିନ୍ଦଙ୍କ ନିକଟରେ ଥିଲାକ ସାତ୍ୟକି
ବୋଇଲେ ସାରଥି ହୁଅ ଶ୍ୱେତର ତହିଁକି ।
ବାବୁ ବାତୁଳା ଯୋଦ୍ଧା ଏ ନ ଜାଣେ ସମର
ବୁଝି ଶୁଝି କରି ରଥ ବାହିବୁ ଏହାର ।
ଶ୍ରୀକୃଷ୍ଣଙ୍କ ଆଜ୍ଞାପାଇ ବୋଲଇ ମାଧବି
ମୁହିଁ ଯେବେ ଶ୍ୱେତ ରଥେ ସାରଥି ହୋଇବି ।
ମୋହର ଆଗରେ ସେହି କରୁ ସତ୍ୟବ୍ରତ
ସଂଗ୍ରାମରେ ନଜିଣିଲେ ନଫେରେ ମୋରଥ ।
ଶୁଣିଣ ସାନନ୍ଦ ହେଲା ସୁଦେଷ୍ଣାର ବଳା
ସାତ୍ୟକି କଣ୍ଠରେ ଦେଇ ରତନର ମାଳା ।
ମୋର ସଦୃଶ ସାରଥି ପାଇଲି ମୁଁ ତୋତେ
ଆଜି ଏ ଯୁଦ୍ଧରେ କିଏ ସମ ହେବ ମୋତେ ।
ତୁ ଯେବେ ସାରଥିପଣେ ଏଡ଼େ ସାମରଥ
କଉରବ ସୈନ୍ୟ ଆଜି ହେବ ରସାଗତ ।
ସାତ୍ୟକିକୁ ଶ୍ୱେତ ଯହୁଁ ଏପରି କହିଲା
ସାତ୍ୟକି ରଥ ମଣ୍ଡନ କରିଣ ଆଣିଲା ।
ଆଭରଣେ ବୀରବେଶ ହୋଇଣ ବିରାଟି
ଯୁଧିଷ୍ଠିଙ୍କ ପଦ୍ମପାଦେ ଯାଇକରି ଲୋଟି ।
ଶତେସସ୍ର ବାରଯାଏ ହୋଇ ପରଣାମି
ବୋଲେ ସର୍ବଶୁଭେ ମୋତେ ଆଜ୍ଞା ଦିଅସ୍ୱାମି ।
ବହୁ ଆନନ୍ଦ କଲ୍ୟାଣ କଲେ ଧର୍ମସୁତ
କୌରବଙ୍କୁ ଜିଣି ଅଭିମାନ ଫେଡ଼ ଶ୍ୱେତ ।
ଦଧିବାମନ ସୁମରି କଲେ ଅନୁକୂଳ
ରଥରେ ବିଜୟ କଲେ ସୁଦେଷ୍ଣାର ବାଳ ।
ଆଗରେ ଅର୍ଜ୍ଜୁନ ବୀର ନନ୍ଦିଘୋଷ ସାଜି
ଶ୍ରୀକୃଷ୍ଣ ଯୋଚିଲେ ସେହି ରଥେ ଚାରିବାଜୀ ।
ଶଙ୍ଖଶ୍ୱେତ ଗୋକ୍ଷୁରେ ଯେ କାମପାଳଚାରି
ଶ୍ୱେତପକ୍ଷୀ ପ୍ରାୟେ ଶୂନ୍ୟେ ଯାନ୍ତି ଗତିକରି ।
ନନ୍ଦିଘୋଷ ପାଶେ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ
ଶଙ୍ଖର ତୁଲେ ଉତ୍ତର ଅଭିମନ୍ୟୁ ମଣ୍ଡି ।

ଶଙ୍ଖ ଉତ୍ତର ଦୁହେଁ ଶ୍ୱେତ ପଛେ ଯାନ୍ତି
ପୁଷ୍ପକ ସଦୃଶ ରଥପରେ ବସିଛନ୍ତି ।
ଚଳିଯାନ୍ତି ହୟବର ଏକୁ ଏକ ତର୍ଜି
ଆକାଶ ବ୍ୟାପି ଉଡ଼ିଲେ ଆନନ୍ଦରେ ଗର୍ଜି ।
ବାଉନ ବାଉନ ଭାର କଳେବର ଗଦା
ଭୀମ ଧରି ଗଲେ ସୈନ୍ୟ କରିବାକୁ ପଦା ।
ତାହାଙ୍କ ସଙ୍ଗେ ଯୁଦ୍ଧକୁ ଦୁର୍ଦ୍ଧର୍ଷ ଚଳିଲେ
ହିଡ଼ିମ୍ବୀ ନନ୍ଦନ ଘଟଉତ୍କଚହିଁ ଗଲେ ।
ଶ୍ୱେତ ହସ୍ତୀରେ ଆରୋହି ଦେବ ଧର୍ମରାୟେ
ବିରାଟ ଦ୍ରୁପଦ ସହ କରିଲେ ବିଜୟେ ।
ବହୁ ସମ୍ଭର୍ବେ ଚଳନ୍ତି ପାଣ୍ଡବ ସଇନି
ଆକାଶ କମ୍ପୁଛି ତାଙ୍କ ମୁଖରାବ ଧ୍ୱନି ।
ସମଦଣ୍ଡ ସଇନ୍ୟ ଯେ ହୋଇଲେ ନିକଟ
କୁରୁ ପାଣ୍ଡବଙ୍କ ବଳ ହେଲେ ଯାଇ ଭେଟ ।
ଭୀଷ୍ମଙ୍କ ଛାମୁରେ ଆଜି ରହିତ କେ ପାରି
ଯେସନେକ ଗଜଯୂଥ ଆବୋରେ କେଶରୀ ।
କାଳାନଳ ପ୍ରାୟେ ଭୀଷ୍ମଙ୍କର ଚକ୍ଷୁ ବେନି
ଦେଖିକରି ତ୍ରାସ କଲେ ପାଣ୍ଡବ ସଇନି ।
ଗର୍ଜନ୍ତି ତର୍ଜନ୍ତି ତହିଁ କଉରବ ବୀରେ
ରେରେକାର ଶବ୍ଦକରି ପଶିଲେ ସମରେ ।
ବାଜିଲାକ ରଣଗୋଳ ଭୀଷ୍ମାର୍ଜ୍ଜୁନ ବେନି
କର୍ଣ୍ଣର ଛାମୁରେ ଯାଇ ଭେଟିଲା ପାବନି ।
ପଞ୍ଚଷଠି ଯୋଦ୍ଧା ଘେନି ଦ୍ରୁପଦ ରାଜନ
ଦ୍ରୋଣଙ୍କର ଆଗେ ଯାଇ ଓଗାଳେ ବହନ ।
ସୋମଦତ୍ତ ସେ ପ୍ରତିଜ୍ଞା ଥାଟେ କରୁଥିଲେ
ତାହାଙ୍କ ଆଗେ ଯାଇଣ ବିରାଟ ମିଳିଲେ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାରଥୀ
ତା ରଥଧ୍ୱଜେ କେଶରୀ ଚିରାଳ ଉଡ଼ନ୍ତି ।
ଉଡ଼ଇ ରଥେ ପତାକା ହୋଇ ଫରଫର
ଉଭୟ ବଳ ପ୍ରଶଂସା କରନ୍ତି ଅପାର ।
ଶ୍ୱେତର ପ୍ରତିଜ୍ଞା କୃପ ଆଚାର୍ଯ୍ୟ ଦେଖିଣ
ଗୁଣଘୋଷ ନାଦ କଲେ ତା ଆଗେ ଯାଇଣ ।
କୃପାଚାର୍ଯ୍ୟ ଦେଖିକରି ଶ୍ୱେତ ବୀରମୂର୍ତ୍ତି
ବେଗରେ ଶର ବିନ୍ଧିଲେ କରି କୋପମତି ।
ପୁଣି ପଚିଶ ନାରାଚ ଘେନି କୃପରଥୀ
ବିନ୍ଧିଲେ ଶ୍ୱେତକୁ ଧରି କାଳାନଳ ମୂର୍ତ୍ତି ।
ପୁନରପି ପଞ୍ଚତ୍ରିଂଶ ଶର ଘେନି କୋପେ
ଆକର୍ଷି ବିନ୍ଧିଲେ ଶ୍ୱେତ କୁମାର ସମୀପେ ।
ଦ୍ରହସିତ ଶ୍ୱେତବୀର କୃପ ଯୁଦ୍ଧ ଦେଖି
ବିନ୍ଧିଲା ବାଣ କୃପଙ୍କୁ ଉପ୍ରୋଧ ଉପେକ୍ଷି ।

ଶ୍ୱେତ ବୋଇଲା ଜାଣିଲି ତୁମ୍ଭର ଏ ବଳ
ବିନ୍ଧୁଅଛି ଶର ମୁହିଁ ଏହାକୁ ସମ୍ଭାଳ ।
ଏହିପରି କହିଣ ଯେ ବିରାଟର ସୁତ
ହାବୋଡ଼ା ଶରକୁ ଘେନି ବିନ୍ଧିଲା ତ୍ୱରିତ ।
ସେହି ଭୟଙ୍କରେ ଶର ଗଲା ବେଗକରି
କୃପଙ୍କ ରଥରେ ପଡ଼ି ଦେଲା ତାଙ୍କୁ ଚୂରି ।
ଲୋହମୟ ରଥ ଭାଜି ହେଲା ମସିଗୁଣ୍ଡା
ସର୍ବେ ପ୍ରଶଂସିଲେ ଧନ୍ୟ ଶ୍ୱେତ ରଣଷଣ୍ଢା ।
ଆରେକ ରଥ ଆରୋହୀ ସୁଦେବର ନାତି
ଶତେକ ନାରାଚ ଘେନି ବିନ୍ଧିଲା ତଡ଼ତି ।
ନାରାଚ ଆସନ୍ତେ ଦୂରୁ କୁମାର ଦେଖିଲେ
ପଞ୍ଚାଶ ନାରାଚ ଘେନି ତାହା ନିବାରିଲେ ।
ଯେସନେକ ଆକାଶରୁ ପଡ଼ଇ ନିର୍ଘାତ
ସେପରି ପଡ଼ି ଭାଙ୍ଗିଲା କୃପଙ୍କର ରଥ ।
ପାଦଗତି ହୋଇଲେ ସେ କୃପ ମହାରଥ
ଯୁଦ୍ଧ ତ୍ୟାଗ କଲେ ତହୁଁ ହୋଇଣ ବିରଥ ।
କୋପରେ ଧାଇଁଲେ ତହୁଁ ବିରାଟର ବଳା
ହସ୍ତରେ ଧରି ଅଛଇ ଖଡଗର ଫଳା ।
ରାହୁତେଜ ଜିଣି ଦିଶେ ବିରାଟ ନନ୍ଦନ
କୃପଙ୍କ କେଶ ଧଇଲା କରି ଆକର୍ଷଣ ।
କୋପେ ଉଞ୍ଚାଇଣ ବୀର ମାରନ୍ତେ କୃପଣ
ହୃଦରେ ଦେଖିଲା ତାର ବ୍ରାହ୍ମଣର ଚିହ୍ନ ।
ଶ୍ରୀବତ୍ସ ଲାଞ୍ଛନ ଦେଖି ଚିହ୍ନିଲାକ ବାଳ
ବୋଇଲା ବ୍ରାହ୍ମଣ ନୋହୁଁ ଅଟୁଁ ତୁ ଚାଣ୍ଡାଳ ।
କେବଣ ପାତକ ତୁହି କରିଥିଲୁ ପୂର୍ବେ
ସେଥିପାଇଁ ଏ ଭାରତେ ଯୁଦ୍ଧ କରୁ ଏବେ ।
ମୁହିଁ କହୁଅଛି ଏଥୁ ପଳାରେ ପାମର
ବିପ୍ର ନୋହିଥିଲେ ଆଜି କାଟନ୍ତି ତୋ ଶିର ।
ଛାଡ଼ିଦ୍ୟନ୍ତେ ପଳାଇଲେ କୃପ ମହାରଥୀ
ଯାଇଣ ମିଳିଲେ ସେହି ଅଶ୍ୱତ୍ଥାମା କତି ।
କୃପ ବୋଲି ଅଶ୍ୱତ୍ଥାମା ମୋର ଦୁଃଖ ଦେଖ
ବିରଥ ହୋଇଲି ମୁହିଁ ପାରୁ ଯେବେ ରଖ ।
କୃପଙ୍କର ତୁଲେ ଥିଲେ ପାଞ୍ଚଶତ ଯୋଧୀ
ଅବିକ୍ଷଣେ ଶ୍ୱେତ ତାଙ୍କୁ ଶରମାନ ବିନ୍ଧି ।
ଯେଉଁପରି ଚୂତଫଳ ପଡ଼େ ବାତଘାତେ
ଯୋଦ୍ଧାଙ୍କର ଶିର ଛିଡ଼ିପଡ଼େ ସେହିମତେ ।
ଏକ ନାରଚେ ପଡ଼ନ୍ତି ଦଶବିଂଶ ରଥୀ
ରକତେ କର୍ଦ୍ଦମ ହେଉଅଛି ବସୁମତୀ ।
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ର ପାଏ ଶୋଭା
ସେହି ପ୍ରାୟ ଦିଶେ ଶ୍ୱେତକୁମାରର ପ୍ରଭା ।

ସହସ୍ରେକ ଶର ଘେନି ବୀରବର ଦ୍ରୋଣି
ଶ୍ୱେତ କୁମାରକୁ ତାହା ବିନ୍ଧିଲେକ ଟାଣି ।
ଦ୍ରୋଣପୁତ୍ର ଶର ବିନ୍ଧେ ଗୁଣକୁ ଟଙ୍କାରି
ତାଙ୍କ ହସ୍ତର ବ୍ୟଗ୍ରତା କହି କେ ନ ପାରି ।
ବିରାଟ ନନ୍ଦନ ଅଟେ ଯୁଦ୍ଧେ ଜଗଜ୍ଜିତା
ପ୍ରତିଅସ୍ତ୍ର ଶର ଛେଦେ ଶ୍ୱେତ ମହାରଥା ।
ପୁଣି ଅୟୁତେକ ଶର ଘେନିକରି ଦ୍ରୋଣି
ଶ୍ୱେତ ଉପରକୁ ତାହା ବିନ୍ଧିଲେକ ଟାଣି ।
ଜୁଳୁଜୁଳା ପୋକ ଯେହେଁ ଉଡ଼ନ୍ତି ଗଗନେ
ଶରମାନ ଦେଖାଯାନ୍ତି ସେହିପରି ଶୂନ୍ୟେ ।
ଅଶ୍ୱତ୍ଥାମା ପ୍ରଶଂସଇ ଧନ୍ୟରେ ବିରାଟି
ଏହା କହି ବିନ୍ଧିଲା ସେ ବାଣ ଚଉଷଠି ।
କୋପେ ଚାରିସସ୍ର ବାଣ ବିନ୍ଧିଲାକ ଶ୍ୱେତ
ପୁଣି ଅଶ୍ୱତ୍ଥାମା ଶର ବିନ୍ଧେ ଅଇବ୍ରତ ।
ଅଶ୍ୱତ୍ଥାମା ଅଟଇ ଯେ ଯୁଦ୍ଧେ ମହାଯୋଦ୍ଧି
ଅପର୍ଯ୍ୟାପ୍ତ ଶର ଶ୍ୱେତକୁମାରକୁ ବିନ୍ଧି ।
ପୁଣି ବିନ୍ଧିଲା ନାରାଚ ପାଞ୍ଚ ଅଇବ୍ରତ
ରଥୀ ସାରଥୀ ଆଦିଙ୍କୁ ବିନ୍ଧେ ଦ୍ରୋଣପୁତ୍ର ।
ସାରଥି ଅଶ୍ୱକୁ ନ୍ୟୁନ ଦେଖି ବୀର ଶ୍ୱେତ
କୋପରେ ବନ୍ଧିଲା ଶର ପାଞ୍ଚ ଅଇବ୍ରତ ।
ରଥୀଙ୍କୁ ଅୟୁତେ ସାରଥୀକୁ ଅଇବ୍ରତ
ଶ୍ୱେତ ବିନ୍ଧଇ ନାରାଚ ହୋଇ କୋପଚିତ୍ତ ।
ବେନି ଶର ଆକାଶରେ ହ୍ନନ୍ତି ପରିତାଳ
ଝଲକି ଉଠଇ ଅଗ୍ନି ଯେହ୍ନେ ଦାବାନଳ ।
ପୁଣି ପାଞ୍ଚଶତ ଶର ଘେନି ବୀର ଶ୍ୱେତ
ବିନ୍ଧିକରି ଭଗ୍ନ କଲା ଅଶ୍ୱତ୍ଥାମା ରଥ ।
ପୁଣି ଯାଇ ଅନ୍ୟ ରଥ ଆରୋହିଲେ ଦ୍ରୋଣି
ଶତେ ଗଜ ଯୋଦ୍ଧା ଶ୍ୱେତ ପକାଇଲା ହାଣି ।
ଗଦା ମୁଦ୍‌ଗର ଖଡ଼୍‌ଗ ଗୁରୁଜ ମୂଷଳି
ଛେଲ ଚକ୍ର ନାରାଚ ଯେ ତେଜରେ ପ୍ରଜ୍ୱଳି ।
ବେନି ରଥୀଙ୍କର ଶର ନ ପାଇ ଦର୍ଶନ
ଚାରିବୀରେ ଆସି ମିଳିଗଲେ ସେହି ସ୍ଥାନ ।
ଶ୍ୱେତ ଶଙ୍ଖ ଉତ୍ତର ସେ ବୀର ଅଭିମନ୍ୟୁ
ସମରେ ଏକତ୍ର ହେଲେ ଏହି ଚାରିସୂନୁ ।
ଯେସନେକ ପଞ୍ଚଅଗ୍ନି ଦହେ ତୃଣରାଶି
କୌରବ ସୈନ୍ୟଙ୍କୁ ତେହ୍ନେ ପକାଇଲେ ଧ୍ୱଂସି
ଏ ଚାରି ବୀରେ ଧାମନ୍ତି କରି ଏକଦୃଷ୍ଟି
ଜ୍ୱାଳାବଳି ବାଣମାନ କରିଣ ସେ ବୃଷ୍ଟି ।
ଉଠିଲେକ ଦଣ୍ଡଭଗ୍ନ ଦେଖି ଦ୍ରୋଣ ଗୁରୁ
ଦେଖି ଅଭିମନ୍ୟୁ ତାଙ୍କୁ ଓଗାଳିଲେ ଦୂରୁ ।

ଯୁଦ୍ଧେ ଦ୍ୱିତୀ କାମ ପ୍ରାୟେ ଦିଶେ ପୁତ୍ରମଣି
ହୃଦରେ ରତ୍ନ ବିରାଜେ ତିମିରକ ଜିଣି ।
କରେ ଶୋଭାପାଏ ଅଜଗବ ନାମେ ଧନୁ
ଦେଖି ଦ୍ରୋଣ ପ୍ରଶଂସନ୍ତି ଧନ୍ୟ ଅଭିମନ୍ୟୁ ।
ଏଡ଼େ ବଡ଼ ପ୍ରତିଜ୍ଞା ତୋ ଚଉଦ ବରଷେ
ଯୁଦ୍ଧବିଦ୍ୟା ସାଧିଲୁ ତୁ ଏଡ଼େକ ସାହସେ ।
ଆଡ଼ ହୁଅ ଯୁଦ୍ଧେ ତୋର ସମୟ ନୁହଇଁ
ଅଜ୍ଞାନ ପୁତ୍ର ତୋ ସଙ୍ଗେ ଯୁଦ୍ଧ ନ ଯୋଗାଇ ।
ଅଭିମନ୍ୟୁ ଛାଡ଼ି ଦ୍ରୋଣ ଗଲେ ଅପସରି
ଶ୍ୱେତ ଛାମୁରେ ମିଳିଲେ ଦ୍ରୋଣ ଧନୁ ଧରି ।
ପ୍ରତିଜ୍ଞା ସାର୍ଥକ ଅଟେ ବିରାଟର ବଳା
ଦ୍ରୋଣଙ୍କୁ ଶର ବିନ୍ଧିଲେ କ୍ଷତ୍ରୀ ଅନର୍ଗଳା ।
ନାରାଚ ବର୍ଷଇ ଯେହ୍ନେ ବର୍ଷେ ମେଘମାଳି
କରେ ଧରିଅଛି ସେହି ଧନୁ ଆର୍ଦ୍ରାବଳି ।
ଅଶ୍ୱତ୍ଥାମାକୁ ବିରଥ ଦ୍ରୋଣଗୁରୁ ଦେଖି
ଶର ସନ୍ଧିଲେ ଶ୍ୱେତକୁ ଉପ୍ରୋଧ ଉପେକ୍ଷି ।
ଅଶ୍ୱତ୍ଥାମା ତୁଲେ ପଞ୍ଚଶତ ରଥୀ ଥିଲେ
ଶ୍ୱେତ ଶରେ ଶତରଥୀ ଭୂମିରେ ପଡ଼ିଲେ ।
ଦୁର୍ଦ୍ଧକ୍ଷ ନାଶିଲେ ତହିଁ ବେନିଶତ ରଥୀ
ଅଭିମନ୍ୟୁ ନାଶକଲେ ନବସସ୍ର ରଥୀ ।
ଏତେକ ଯୋଦ୍ଧା ପଡ଼ିଲେ ଅଶ୍ୱତ୍ଥାମାଙ୍କର
ଶ୍ୱେତ ଦ୍ରୋଣଙ୍କ ସମର ହେଲା ଗୁରୁତର ।
ଶ୍ୱେତବୀର ସସ୍ରେ ଶର ବିନ୍ଧିଲା ଦ୍ରୋଣଙ୍କୁ
ପୁଣି ଚାରିସସ୍ର ଶର ବିନ୍ଧିଲା ଅଶ୍ୱଙ୍କୁ ।
ଶ୍ୱେତ ହସ୍ତର ବ୍ୟଗ୍ରତା କହି ତ ନ ପାରି
ଦ୍ରୋଣଙ୍କୁ ବିନ୍ଧିଲା ପୁଣି ଶର ସସ୍ର ଚାରି ।
ପୁଣି ପଞ୍ଚଷଠି ଶର ଧନୁରେ ପୂରାଇ
ଆକର୍ଷି ଦ୍ରୋଣେ ବିନ୍ଧିଲା ବୀରବେଗେ ଧାଇଁ ।
ଅୟୁତେ ଲୁହାର ଶର ଅଟେ ତୀକ୍ଷ୍ଣମୁନା
ବିନ୍ଧନ୍ତେ ଭେଦିଲା ସେହି ଦ୍ରୋଣଙ୍କର ସେହ୍ନା ।
ଭରଦ୍ୱାଜ ସୁତ ପର୍ଶୁରାମ ସମକ୍ଷତ୍ରୀ
ଦ୍ରୋଣେ ଜିଣିବାକୁ ମର୍ତ୍ତ୍ୟପୁରେ କା ଶକତି ।
କୁରୁପାଣ୍ଡବେ ଯା ବିଦ୍ୟାବଳେ ହେଲେକ୍ଷତ୍ରି
ସେଦ୍ରୋଣ ଛାମୁରେ ଶ୍ୱେତକୁମାର ଯେରଥୀ ।
ଅବିକ୍ଷଣେ ବିନ୍ଧୁଛନ୍ତି ଦ୍ରୋଣ ଶର ଘେନି
ଗ୍ରୀଷ୍ମେ ଯେହ୍ନେ ପରବତ ଦହଇ ସେ ବହ୍ନି ।
ହସ୍ତର ବ୍ୟଗ୍ରତା କେହୁ କହି ତ କି ପାରି
ତୂଣୁ କାଢି ବିନ୍ଧୁଛନ୍ତି ଶର ବ୍ୟଗ୍ରକରି ।
ଯେଉଁପରି ଆକାଶରୁ ପଡ଼େ ଜଳଧାର
ସେପରି ଗଗନୁ ପଡ଼େ ଦ୍ରୋଣଙ୍କର ଶର ।

ଶ୍ୱେତକୁମାରର ରଥ ହେଲା ଅଦୃଶ୍ୟହିଁ
ତାହା ଦେଖିଣ ବିରାଟ ଶର ଯେ ବିନ୍ଧଇ ।
ଦ୍ରୋଣଙ୍କ ଶର ଘୋଟଇ ଯେସନେ ତିମିରି
ଶ୍ୱେତଙ୍କ ବାଣ ସୂର୍ଯ୍ୟରେ ଗଲା ଅପସରି ।
ଶ୍ୱେତର ନାରାଚ ଯହୁଁ ଆକାଶରେ ଘୋଟି
ଦ୍ରୋଣ ପ୍ରଶଂସା କରିଲେ ଧନ୍ୟରେ ବିରାଟି ।
ବାରୁଣା ଶର ଘେନିଣ ଦ୍ରୋଣ ବେଗେ ପେଷି
ସେ ଶର ଶ୍ୱେତକୁମାର ବେଗରେ ବିନାଶି ।
ନିଦାଘ ବାଣକୁ ପୁଣି ପେଷିଦ୍ୟନ୍ତି ଦ୍ରୋଣ
ପ୍ରତିଅସ୍ତ୍ରେ ଶ୍ୱେତ ତାକୁ କଲେ ନିବାରଣ ।
କୋପେ ଦ୍ରୋଣଗୁରୁ ରସାଗତ ଶର ପେଷି
କାଳାନଳ ବାଣେ ଶ୍ୱେତ ତାହାକୁ ବିନାଶି ।
ଲାଘବ ଶରରେ ଦ୍ରୋଣ ନ ପାରନ୍ତେ ଜିଣି
ବଡ଼ବାନଳ ଶରକୁ ପେଷିଲେ ସେ ଆଣି ।
ପର୍ଶୁରାମ ଜିଣିଥିଲେ ପୃଥ୍ୱୀ ଯେଉଁ ଶରେ
ଅଜ୍ଞାନେ ପେଷିଲେ ତାହା କିଞ୍ଚିତ ସମରେ ।
ତ୍ରୈଲୋକ୍ୟ କମ୍ପଇ ଯେଉଁ ଶରର ସମୁକ୍ଷେ
ଧର୍ମକୁ ଛାଡ଼ିଲେ ଗୁରୁ ସମର ବିମୁଖେ ।
ସହସ୍ରେକ ଶିଖା ବ୍ରହ୍ମାନଳ ଶର ଘେନି
ତାକୁ ଦେଖି ଭୟକଲେ ଉଭୟ ସଇନି ।
ଅଇଲାକ ନାରାଚ ଯେ ଶୂନ୍ୟପଥେ ଗର୍ଜି
ନିର୍ଘାତ କି ଗଗନରୁ ପଡ଼େ ଗଳଗାଜି ।
ବହ୍ନିର ତେଜ ଦେଖିଣ ପଳାଇଲେ ବଳ
ସାତ୍ୟକି ଡ଼ାକିଲା ଶ୍ୱେତ ସମ୍ଭାଳ ସମ୍ଭାଳ ।
ତୋ ପ୍ରତିଜ୍ଞା ଯୁଧିଷ୍ଠିର ଦେବ ଦେଖି ତୋଷ
ପାଣ୍ଡବେ ଭାରତଯୁଦ୍ଧେ କଲେ ତୋତେଆଶ ।
ଶ୍ୱେତ ବୋଲେ ତୁହି ସାହା ହୋଇଥିବୁ ରଥେ
ଦେଖିବା ଆଜି କୌରବ ବର୍ତ୍ତିବେ କେମନ୍ତେ ।
ଏ ଶର ଦେଖିଣ ତୁହି ନ କର ଯେ ଭୟେ
ସେ ମୋତେ ଦିଶୁଛି ଜୁଳୁଜୁଳା ପୋକ ପ୍ରାୟେ ।
ଶ୍ୱେତକୁମାର ବୋଇଲା ଶୁଣ ହେ ସାରଥି
ଏହିକ୍ଷଣି ପ୍ରତିଶରେ ଦେବି ମୁଁ ନିବର୍ତ୍ତି
ପୁଣି ମରୁତାସ୍ତ୍ର କୋପେ ବିନ୍ଧିଲାକ ଶ୍ୱେତ
ଅନଳ ଆସନ୍ତେ ଦୂରୁ ଘୋଟିଲାକ ବାତ ।
ପାଣ୍ଡବବଳଙ୍କୁ ଅଗ୍ନି ବାଣ ଅସିଥିଲା
ବାୟୁ ବିଘାତେ ତକ୍ଷଣେ ତହିଁ ଲେଉଟିଲା ।
ସସ୍ରଶିଖାହୋଇ ଅଗ୍ନି ପଡ଼ିଲା ଲେଉଟି
ସେଥିରେ ଦହନ ହେଲା ଦ୍ରୋଣଙ୍କ ରଥଟି ।
କୌରବ ଥାଟରେ ଅଗ୍ନି ପଡ଼ିଲା ଝସାଇ
ବହୁରଥ ଧ୍ୱଂସ ହେଲା ଅଗ୍ନିତେଜ ପାଇ ।

ପବନ ବହନ୍ତେ ଯେ ନ ଲିଭଇ ଅନଳ
ପଳାଇଲେ କୁରୁପତି ହୋଇ ଅସମ୍ଭାଳ ।
ଅଢାଇ ପ୍ରହର ହେଲା ଅସି ଦିନକର
ତହୁଁ ପୁଣି ଅଗ୍ନି ତେଜ ହେଲା ଖରତର ।
କଉରବେ ପଳାନ୍ତେଣ ପାଣ୍ଡବେ ଗୋଡ଼ାନ୍ତି
ପବନ ବହନ୍ତେ ବୃଦ୍ଧି ହେଲା ଅଗ୍ନିକାନ୍ତି ।
ଭାଜି ସମଦଣ୍ଡ ପଳାଇଲେ ଏକମୁଖେ
ସୈନ୍ୟ ପଳାଉ ଅଛନ୍ତି ମନର ବିମୁଖେ ।
ଫଳା ଆଡ଼େଣି ଶକତି ଗୁରୁଜ ଲାଙ୍ଗିଆ
ଛାଡ଼ି ପଳାନ୍ତି ଯୋଦ୍ଧାଏ କେହି ନୋହିଁ ଠିଆ ।
ସୈନ୍ୟ ପଳାବନ୍ତେ ଭୀଷ୍ମ ହୋଇଲେକ ଏକା
ବେଢନ୍ତି ଭୀଷ୍ମଦେବଙ୍କୁ ପାଇଲେ ସେ ଶଙ୍କା ।
ପାଣ୍ଡବ ସୁନ୍ଦର ବୀର ବୃକୋଦର ଉଠି
ଭୀଷ୍ମଙ୍କ ରଥ ଉପରେ ଗଦା ନେଇ ପିଟି ।
ଗଦା ବାଜନ୍ତେଣ ରଥ ହେଲା ବେନିଖଣ୍ଡ
ହୟ ସାରଥି ସହିତେ ହେଲେ ମସିଗୁଣ୍ଡ ।
ଭୀଷ୍ମ ମଣିନାଗ ନାମେ ହସ୍ତୀଏ ଆରୋହି
ପଛକୁ ଘୁଞ୍ଚିଲେ ଭୀଷ୍ମ ଶସ୍ତ୍ରକୁ ପୂରାଇ ।
ଶର ବିନ୍ଧୁ ବିନ୍ଧୁ ପଛଘୁଞ୍ଚା ଦେଇ ଆସି
ବେନିକ୍ରୋଶ ପରେ ଯାଇ ନିଜ ଥାଟେ ମିଶି ।
ବେଳ ଆସି ଅବସାନ ଶ୍ରମେ ମହାକ୍ଷୁଧା
ଯୁକତରେ ଭଗ୍ନବଳ ଅଗ୍ନି ତେଜେ ବାଧା ।
ନ ପାରନ୍ତି ଶସ୍ତ୍ର ଧରି ନ ପାରନ୍ତି ଚାଲି
ଡାକନ୍ତି ଶରଣ ଗଲୁ ରଖ ରଖ ବୋଲି ।
ଶୁଣି ବୀର ଶିଖଣ୍ଡୀ ଯେ ବୀର ଧୃଷ୍ଟଦ୍ୟୁମ୍ନ
ସଙ୍ଗେ ଶ୍ୱେତ ଉତ୍ତର ଯେ ଭୀମର ନନ୍ଦନ ।
ନିରପେକ୍ଷ ସମର ଯେ ତାଙ୍କ ପିଲାବୁଦ୍ଧି
ଶରଣ ବୋଇଲେ ଦୁଇଗୁଣ ଶର ବିନ୍ଧି ।
ପଡନ୍ତେ ଯୋଦ୍ଧାଏ ତହିଁ ବହୁରଥ ରଥୀ
ଆବର ଅଶ୍ୱ ଯୋଦ୍ଧାଏ ବହୁତ ପଦାତି ।
ତେରକୋଶ ପରିଯନ୍ତେ ପଡ଼ିଲେ ମୂର୍ଦ୍ଧାର
ନଦୀଏ ବହିଲା ମୃତପିଣ୍ଡ ରକତର ।
ପଛେଇ ସୈନ୍ୟ ପଳାନ୍ତି ଶିରେ କର ତୋଳି
ଯୁଦ୍ଧକ୍ଷେତ୍ରେ ରକ୍ତଯୋଗୁଁ ମରିଗଲା ଧୂଳି ।
ବହୁତ ସୈନ୍ୟ ପଡ଼ିଲେ କୌରବଙ୍କ ଥାଟେ
ପଶି ନ ପାରିଲେ କେହି ପାଣ୍ଡବ ନିକଟେ ।
ଯମୁନା ନଦୀରେ ସର୍ବେ ପଶିଲେକ ଯାଇ
କେ ଅବା ପଶିଲେ ଇନ୍ଦ୍ରପ୍ରସ୍ଥେ ଲୁଚାଦେଇ ।
ଦିନକର ମେରୁପୃଷ୍ଠେ ଉହାଡ଼ ହୋଇଲେ
ଯମପ୍ରସ୍ଥ ରାଜ୍ୟଠାବେ ପାଣ୍ଡବେ ରହିଲେ ।

ସୂର୍ଯ୍ୟ ଅସ୍ତଗଲେ ହେଲା ବେନିଘଡ଼ି ରାତି
ଅନ୍ଧ ଆଗେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ ମିଳନ୍ତି।
ସର୍ବେ ପ୍ରଶଂସା କରନ୍ତି ଶ୍ୱେତର ମହିମା
ସାଧୁ ସାଧୁ ରେ ବିରାଟସୁତ ମହାତମା।
ଧୃତରାଷ୍ଟ୍ର ପ୍ରଶଂସନ୍ତି ଧନ୍ୟ ହେ ସଞ୍ଜୟ
ତୁହିରେ ମହାପଣ୍ଡିତ ଅତି ଜ୍ଞାନମୟ।
କାଲି ମୋତେ ଯାହା କହିଥିଲୁ ତୁ ନିଶାରେ
ପ୍ରତ୍ୟକ୍ଷ ଫଳିଲା ତାହା ଶୁଣିଲି କର୍ଣ୍ଣରେ।
ଦ୍ରୋଣ ବୋଇଲେ ସଞ୍ଜୟ ଅଟେ ମହାଜ୍ଞାନୀ
ଭୂତ ଭବିଷ୍ୟତ ବର୍ତ୍ତମାନ ଜାଣେ ତିନି।
ଏହା ଶୁଣି ଦୁର୍ଯ୍ୟୋଧନ କରି ଅତି ରାଗ
କାରେ କୋପଭର କାକୁ ପାଶୁ କରେ ତ୍ୟାଗ
ମହାରାଗୀ ଅଟେ ପୁଣି ଦୁଷ୍ଟ ତା ପ୍ରକୃତି
କାହାକୁ କିଛି ନ କହେ ବିରସ ତା ମତି।
ଭୂମିରେ ହସ୍ତ ତାଡ଼ିଣ ଓଷ୍ଠେ ଦନ୍ତଚାପି
ଶ୍ୱେତର ପ୍ରଶଂସା ଶୁଣି ହେଲା ମହାକୋପୀ।
ଜାନୁରେ କରକୁ ଠୁକି ରୋମ ଉଲ୍ଲସାଇ
ବାହାସ୍ଫୋଟ ମାରି କୋପେ ଦେହକୁ କମ୍ପାଇ।
ଦୁଃଶାସନ ଦୁର୍ବିନ୍ଦ ସେ ଦୁର୍ମୁଖ ଦୁରନ୍ତ
ଦୁର୍ବଳ ଦୁର୍ମନ ଆଦି ଡାକି ସୋଦରନ୍ତ।
ଏମାନଙ୍କୁ ଚାହିଁ ଦୁର୍ଯ୍ୟୋଧନ ଆଜ୍ଞା ଦେଲା
ଭୀଷ୍ମ ଆଉ ରାଜାମାନେ ଯାଆନ୍ତୁ ବୋଇଲା।
ଅପଖ୍ୟାତ ଜନମିଲା ସଂସାରେ ମୋହର
ଅନେଶ୍ୱେତ ଭାଇ ଘେନି କରିବି ସମର।
ଭୀଷ୍ମ ଭୂରିଶ୍ରବା ଦ୍ରୋଣ ଆଦି ରଥୀ ଯାନ୍ତୁ
ରାଜାଦି ସୈନ୍ୟଙ୍କୁ ଘେନି ସକଳେ ଫେରନ୍ତୁ।
ସଂସାରରେ ଅପଖ୍ୟାତ ନୋହୁ ମୋର ନାମେ
ଅନେଶ୍ୱେତ ଭାଇ ଘେନି ପଶିବି ସଂଗ୍ରାମେ।
ନିଜ କର୍ମକୁ ଆଦରି ବୋଲେ ଧାର୍ତ୍ତରାଷ୍ଟ୍ରି
କହୁଥିଲା ଏହି କଥା ଆଗରୁ ଯୁଧିଷ୍ଠି।
ଅଜ୍ଞାନ ପଣରେ ସିନା କଲି ମୁହିଁ ମନ୍ଦ
ବହୁ ଲୋକ ରୁଣ୍ଡ କରି ଆରମ୍ଭିଲି ଦ୍ୱନ୍ଦ୍ୱ।
ବହୁଲୋକରେ ଇନ୍ଦୁର ନୋହେ କେବେ ମାରି
ଭାଲେ କର ମାରେ ନିଜ କର୍ମ ନିନ୍ଦାକରି।
ବହୁତ ପାରା ହୋଇଲେ ମାରେ କି ସଞ୍ଚାଣ
ବହୁ ଅଜାପଲ ବ୍ୟାଘ୍ର ମାରିବେ କି ପୁଣ।
ବହୁତ ବିଷୟେ ଜାଣ ନାଶ ଯାନ୍ତି ପ୍ରାଣୀ
ବହୁ ସ୍ତିରୀରେ ପୁରୁଷ ପାରନ୍ତି କି ଜିଣି।
ମୁହିଁ ମୂର୍ଖ ନ ଜାଣିଣ କଲି ବହୁ ରୁଣ୍ଡ
ବହୁତ ଗାଈ ମିଶିଲେ ନାଶିବେ ସେ ଷଣ୍ଢ।

ବହୁତ ରାଜାଏ ରୁଣ୍ଡ ହେଲେ ଅନିମିତ୍ତେ
ମୋହର ବଂଶ ବୁଡ଼ିବ ଏହାଙ୍କ ସାକ୍ଷାତେ।
ଛାଗଳପଲ ସମାନ ହେଲେ ମୋର ଥାଟ
ବ୍ୟାଘ୍ର ସମ ପୁତ୍ର ଜନ୍ମ କରିଛି ବିରାଟ।
ମୋହର ସୈନ୍ୟ ସକଳ ରମ୍ଭାବନ ହେଲା
ପ୍ରବଳ ପବନ ଶ୍ୱେତ ତାକୁ ଲୋଟାଇଲା।
ହସ୍ତୀପରେ ରହିଥିଲେ ମୋହର ଯେ ଥାଟ
ଦୁଇଯୂଣ ପରିଯନ୍ତେ ନ ପାଇଲେ ବାଟ।
କେଶରୀ ଦେଖି ପଳାନ୍ତି ଯେହ୍ନେ ଗଜଯୂଥ
ସେହିପରି ସୈନ୍ୟ ମୋର ହେଲେ ଇତସ୍ତତଃ।
ନୋହିବ ମୋହର କାର୍ଯ୍ୟ ଘଟିଲା ଦୁର୍ଦ୍ଦଶା
ମେରୁ ଆଶ୍ରେ କଲି ମୁଁ ନ ପାଇଲି ଭରସା।
ତୃଣ ସମାନ ହୋଇଲେ ମୋହର ସଇନି
ବିରାଟନନ୍ଦନହେଲା କାଳାନଳ ବହ୍ନି।
ପ୍ରଚଣ୍ଡ ପବନ ମୋତେ ହୋଇଲା ସାତ୍ୟକି
ଲଙ୍କାକୁ ଧ୍ୱଂସିଲା ଯେହ୍ନେ ମାରୁତି ଏକାକୀ।
ଏପରି ବହୁ ଝିଙ୍ଗାସି ବୋଲନ୍ତି ନୃପତି
ରାଗେ ସଭାରୁ ଉଠିଲେ ଦ୍ରୋଣ ମହାରଥୀ।
ଦ୍ରୋଣ ବୋଇଲେ ତୁ ଶୁଣ ରେ ମାନଗୋବିନ୍ଦ
କାହାରି ବୋଲ ନ କରି ଆରମ୍ଭିଲୁ ଦ୍ୱନ୍ଦ୍ୱ।
ରାମ ରାବଣର ପୂର୍ବେ ହୋଇଥିଲା ଯୁଦ୍ଧ
ଲକ୍ଷ୍ମଣଙ୍କୁ ଇନ୍ଦ୍ରଜିତ ପେଷେ ନାଗବନ୍ଧ।
ଲକ୍ଷ୍ମଣର ବକ୍ଷସ୍ଥଳେ ଶକତି ପଡ଼ିଲା
ଔଷଧ ପ୍ରସାଦେ ପୁଣି ଜୀବନ ପାଇଲା।
ସୀତା ହରଣେ ରାମଙ୍କୁ ବିପତ୍ତି ପଡ଼ିଲା
କୈକେୟୀ ବିମାତା ଯୋଗେ ଏଦଶା ଘଟିଲା।
ଦେବତାଏ ଜାଣି ମନ୍ଦ ପାଞ୍ଚିଲେ ରାମଙ୍କୁ
ରାବଣ ମରିବ ରାମ ଗଲେ ଅରଣ୍ୟକୁ।
ତୁହିରେ ମାନଗୋବିନ୍ଦ ନ ଜାଣୁ ଏମାନ
କପଟେ ଶକୁନି ମନ୍ତ୍ରୀ କରୁଛି ଏସନ।
ବେଶ୍ୟାର ସଙ୍ଗେ ପଡ଼ିଲେ କାମୀ ନାଶଯାଇ
ତସ୍କର ସଙ୍ଗ କରିଲେ ବନ୍ଧନ ହୁଅଇ।
ରୋଗର ପ୍ରସଙ୍ଗେ ଜାଣ ନାଶଯାଇ ବପୁ
ରାଗ ଜନ୍ମିଲେ ଶରୀରେ ଜାତ ହୁଏ ରିପୁ।
ପରପୁରୁଷରେ ନାଶ ଯାନ୍ତି ଯୁବାସ୍ତିରୀ
କୁଳସ୍ତିରୀ ନାଶଯାନ୍ତି ହୋଇଲେ ଦୋଚାରୀ।
ସ୍ତ୍ରୀ ବଶେ ରହିଲେ ନର ହୁଏ ମୋହମନ୍ଦ
କୁଟୁମ୍ବରେ ହୁଏ ସଦା ଗୃହର ବିବାଦ।
ଅଥବା ଏଥିରୁ ଯେବେ ପାରୁ ଅପସରି
ବଂଶ ରକ୍ଷା ହେବ ଆଉ ଭୁଞ୍ଜିବୁ ତୁ ଶିରୀ।

ଦୁର୍ଯ୍ୟୋଧନ ବୋଲେ ଗୁରୁ ନୁହଁଇ ଏମନ୍ତ
ତୁମ୍ଭେମାନେ ଘୁଞ୍ଚିଯାଅ ହୋଇଣ ନିସତ।
ଦ୍ରୋଣବୋଇଲେ ରାଜା ତୋ ଝିଙ୍ଗାସ ଶୁଣିଲି
ଆମ୍ଭର ସମର ରାୟେ ଦେଖିବୁ ତୁ କାଲି।
ଯେବେ ଶ୍ୱେତ ପ୍ରାୟେ ହେବେ ସହସ୍ରେକରଥୀ
ମୋହର ଛାମୁରେ କେହି ନ ଯିବେ ବରତି।
ଅଥବା ଶ୍ୱେତକୁ ଯେବେ ନ ପାରିବି ମାରି
ସଂଗ୍ରାମେ ଶସ୍ତ୍ର ଛାଡ଼ିବି ସତ୍ୟ ଯେ ମୋହରି।
ଏପରି ପ୍ରତିଜ୍ଞା ଯହୁଁ ଦ୍ରୋଣଗୁରୁ କଲେ
ଧୃତରାଷ୍ଟ୍ରଙ୍କ ଛାମୁରେ ପଣ୍ଡୁପୁତ୍ରେ ଥିଲେ।
ଭୀମସେନ ବୋଲେ ଗୁରୁ କି ପ୍ରତିଜ୍ଞା କର
ଏକା ଆମ୍ଭ ଭାଇ ସିନା କର ଏତେ ଦୂର।
ପ୍ରତିଜ୍ଞା ଯେ କରିଥିଲେ ଭୀଷ୍ମ ମହାରଥୀ
ଦଶସସ୍ର ଯୋଦ୍ଧା ସେହୁ ମାରିବାକୁ ନିତି।
ଆଜିର ଯୁଦ୍ଧରେ ଜଣେ ନ ପାରିଲେ ମାରି
ରଖି ନ ପାରିଲେ ସେହୁ ପ୍ରତିଜ୍ଞା ତାଙ୍କରି।
କ୍ଷତ୍ରୀଙ୍କ ପ୍ରତିଜ୍ଞା ଯେବେ ଅନ୍ୟଥା ହୋଇବ
ମହତ ଲୋକର ଯେବେ ବଚନ ଟଳିବ।
ବ୍ରାହ୍ମଣ ହୋଇଣ ଯେବେ କହେ ମିଥ୍ୟାକଥା
ଆପଣା ସତ୍ୟରକ୍ଷା ଯେ ନ କରେ ସର୍ବଥା।
ରାଜାର ଛାମୁରେ ଯେବେ କହିବ ଅନୀତି
ପୁତ୍ର ହୋଇ ପିତା ମାତାଠାରେ ଅଭକତି।
ସ୍ତିରୀର ସହିତ ଯେବେ ଉପୁଜେ ଅରିଷ୍ଟି
କିପାଁ ଇନ୍ଦ୍ରଦେବ ତେବେ କରିବ ବା ବୃଷ୍ଟି।
କଚ୍ଛପମୁଣ୍ଡ ପ୍ରସାରି ଯେହ୍ନେ ଗୁପ୍ତକରି
ଭୀଷ୍ମ ଦେବଙ୍କ ପ୍ରତିଜ୍ଞା ହେଲା ସେହିପରି।
ଯେତେବେଳେ ଯାହା ଆସେ ବାଳକଙ୍କ ମନେ
ଅନ୍ୟଥା ନ ଭାବି ସେହୁ କହନ୍ତି ବଚନେ।
ଭୀଷ୍ମଙ୍କର ପ୍ରତିଜ୍ଞା ତ ଏମନ୍ତ ହୋଇଲା
ଯାବତ କାଳକୁ ଏହି କଥା ଯେ ରହିଲା।
ଜୟ ସଂସାରବଲ୍ଲଭ ତୁହି ବାସୁଦେବ
ତୁହି ସିନା ଜାଣୁ ନାଥ ଭାବ ସେ ଅଭାବ।
ବ୍ରାହ୍ମଣ ହେଉ ଅଥବା ଶୂଦ୍ର ହାଦେ ହେଉ
ତବ ଲୟ ନ କହିଲେ ମୁକ୍ତି ଅଛି କାହୁଁ।
ଜ୍ଞାନାଜ୍ଞାନେ ହେଉ ଅବା ସବ୍ୟେ ଅପସବ୍ୟେ
କ୍ରିୟା ବା ଅକ୍ରିୟାହେଉ ଯେହୁହୃଦେ ଭାବେ।
ସେ ଲୋକକୁ ତୁହି ନାଥ ମୁକତି ଯେ ଦେଉ
ସଚେତ ଅଚେତ ନାଥ ତୁହି ଯେ କରାଉ।
ଭାବ କରାଇଣ ନାଥ ନାଶ ଯେ କରାଇ
ସବୁଦେଖୁ ଅଛୁ ତୋତେ ନଦେଖନ୍ତି କେହି।
ନଜାଣି ଲୋକେପଶନ୍ତି ନାନା ତୀର୍ଥ ପଥେ
ନ ଧରନ୍ତି ତୋ ମଧୁର ନାମ ହୃଦଗତେ।
ସକଳ ତୀର୍ଥ ଅଛନ୍ତି ତୋ ପାଦକମଳେ
ବୁଲନ୍ତି ଲୋକେ କେବଳ ମନର ଚଞ୍ଚଳେ।
ଗୁରୁଙ୍କର ଉପଦେଶ ତୋର ନାମଗୋଟି
କଳ୍ପବଟ ତଳେ ଅଛୁ ଘେନି ତୀର୍ଥକୋଟି।
ପରମାନନ୍ଦ ପୁରୁଷ ତୁ କରୁଣାମୟ
କ୍ଷେତ୍ର ଜାଣି ନ ମାଡ଼ଇ ସୂର୍ଯ୍ୟର ତନୟ।
ତୁହି ନାରାୟଣ ଦଣ୍ଡେ ବାସ କର ଯହିଁ
ବହୁଯୁଗ ପରିଯନ୍ତେ ତୀର୍ଥ ସେ ବୋଲାଇ।
ଅପୂର୍ବ କରିଣ ଏକ ଦ୍ୱାରକା ରଚିଲ
ତାକୁ ଏକ ମହାତୀର୍ଥ କରିଣ ରଖିଲ।
ଯହିଁ ପ୍ରଭୁ ନିମିଷେକ କରନ୍ତି ବିଜୟେ
ଯାବଚନ୍ଦ୍ର ଯାଏ ମହାତୀର୍ଥ ସେ ବୋଲାଏ।
ଲୀଳାରେ ଜନମ ତୁମ୍ଭେ ବାଳରୂପ ଧରି
କୁତୂହଳ ଭାବେ ପ୍ରଭୁ ନାନା ଖେଳା କରି।
ତବ ନାମଗୋଟି ଆଉ ମମ ହୃଦଗତେ
ଚିତ୍ତ ବିଚଳିତ ତାହା ନ ହୁଏ ଯେମନ୍ତେ।
ଯେଉଁ ଆଜ୍ଞା ଦେଇଛନ୍ତି ମୋତେ ସେ ଅମ୍ବିକା
କୃପାଜଳ ନନ୍ଦିନୀ ମୋ ହୃଦହାର ଏକା।
ଅଜପା ପଣ୍ଡିତ ମୁହିଁ ଅକର୍ମୀ ଅଟଇ
ଶ୍ରୀଚଣ୍ଡୀ ଶାରଳା ପାଦେ ସର୍ବଦା ଖଟଇ।
ଯେଉଁ ଭାରତ ଖଣ୍ଡିକ କରିବଇଁ ଲେଖା
ଏଥେ ମାଶାରଳା ଦେବୀହେଲେ ମୋରସଖା।
ମୋ ହୃଦେ ବସି କହନ୍ତେ ତେଣୁ ମୁଁ ଜାଣିଲି
ଶରଧା କରିଣ ଏହା ଯତନେ ଲେଖିଲି।
ଗଙ୍ଗାକୂଳ ବାଲି କେହୁ ପାରେ ଅନ୍ତ କରି
କେହୁ ବା ଗଣି ପାରିବ ସମୁଦ୍ର ଲହରୀ।
ଝଙ୍କଡ଼ବାସିନୀ ଚଣ୍ଡୀ ଶ୍ରୀ ଶାରଳା ଦେବୀ
ତାଙ୍କ ପାଦେ ବନ୍ଦଇଁ ମୁଁ ଶ୍ରୀ ଶାରଳାକବି।
ହେ ଜନେ ତରିବ ଯେବେ ଚିନ୍ତ ଆଦିମୂଳ
ସେହି ପ୍ରଭୁ ଅଛନ୍ତି ଯେ ଭକତବତ୍ସଳ।
ସେହି ପ୍ରଭୁଙ୍କ ଯୁଗଳ ପାଦ ଅରବିନ୍ଦ
ରସପାନ କରୁ ସଦା ମୋ ମନ ଷଟ୍‌ପଦ।
ଏହି ଆଶା ସବୁବେଳେ ଶାରଳା ଦାସର
ଏ ବାଞ୍ଛା ପୂର୍ଣ୍ଣ ହେବ କି ହେ କରୁଣାକର।

☆ ☆ ☆

## ପଞ୍ଚମ ଦିନ ଯୁଦ୍ଧରେ ଦ୍ରୋଣଙ୍କ ବ୍ରହ୍ମାସ୍ତ୍ରରେ ଶ୍ୱେତର ପତନ

ବୈବସ୍ୱତ ଅଗସ୍ତିଙ୍କୁ ପୁଣି କଲେ ପୁଚ୍ଛା
ଭାରତ ଶୁଣିବା ପାଇଁ ମୋର ବଡ଼ ଇଚ୍ଛା।

ପଞ୍ଚମ ଦିବସେ ଭୀଷ୍ମପର୍ବର ଯେ କଥା
କହ ମହାମୁନି ମୋତେ ତୁମ୍ଭେ ସର୍ବଜ୍ଞାତା ।
ଅଗସ୍ତି ବୋଲନ୍ତି ଶୁଣ ମନୁ ଦଣ୍ଡଧର
ଦୁର୍ଯ୍ୟୋଧନ ଅପ୍ରାଜୟେ ଚତୁର୍ଥ ଦିନର ।
ବହୁତ ସମର କଲା ଶ୍ୱେତ ଏକା ରଥେ
କୌରବେ ପଡ଼ିଲେ ତେରକୋଶ ପରିଯନ୍ତେ ।
ନବସସ୍ର ରାଜା ଆଉ ତ୍ରିଂଶସସ୍ର ହାତୀ
ପାଞ୍ଚଲକ୍ଷ ଅଶ୍ୱ ଯୋଦ୍ଧା ପାଞ୍ଚକ୍ଷୌଣୀ ରଥୀ ।
ଅସମର୍ଥ ହୋଇ ସର୍ବେ ପଡ଼ିଲେକ ଯୁଦ୍ଧେ
ସଇନ୍ୟ ପତିତ ହେଲେ ବତ୍ରିଶ ପରାର୍ଦ୍ଧେ ।
ପଞ୍ଚଯୂଣ ସେ ଯେ ଦୀର୍ଘ ଦୁଇଯୂଣ ପ୍ରତି
ପାଞ୍ଚତାଳ ଉସର୍ଗରେ ପଡ଼ିଲେ ପଦାତି ।
ଯମପ୍ରସ୍ଥ ବୋଲି ନଦୀ ସରସ୍ୱତୀ କୂଳେ
ପାଣ୍ଡବେ ରହିଅଛନ୍ତି ବାଞ୍ଛାବଟ ତଳେ ।
ପୁଣ ପାଣ୍ଡବେ କୌରବେ ହେଲେ ଏକଯୋଗ
ରଜନୀ ବଞ୍ଚିଲେ ସର୍ବେ ହୋଇଣ ସଂଯୋଗ ।
ପୂର୍ବଦିଗେ ସୂର୍ଯ୍ୟ ଯହୁଁ ଉଦୟ ହୋଇଲେ
ବାସୁଦେବ ପାଞ୍ଚଜନ୍ୟ ଶଙ୍ଖଶବ୍ଦ କଲେ ।
ଆକାଶେ ଶୁଭିଲା ଯହୁଁ ହରି ଶଙ୍ଖଧ୍ୱନି
ସାଧୁରେ ପାଣ୍ଡବେ ପ୍ରଶଂସନ୍ତି ପଦ୍ମଯୋନି ।
ସ୍ନାନ ଆଦି ନିତ୍ୟକର୍ମ ସାରି ବେଗ ବେଗ
ପୂର୍ବ ପଶ୍ଚିମ ହୋଇଣ ରହି ବେନିଭାଗ ।
ବାଜଇ ଯେ ବୀରତୂର ଟମକ ଦାଉଣ୍ଡି
ବୀରବେଶେ ଅଳଙ୍କାରମାନ ସର୍ବେ ମଣ୍ଡି ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀର ଡାକି ନାମ ଧରି
ସାଜରେ ସାଜରେ ବୋଲି ବାଜଇ ମହୁରୀ ।
ନନ୍ଦିଘୋଷ ରଥରେ ଯେ ଶ୍ରୀକୃଷ୍ଣ ସାରଥି
ଧନୁ ଧଇଲେ ବିଚିତ୍ରବୀର୍ଯ୍ୟଙ୍କର ନାତି ।
ଭୀମସେନ ରଥରେ ଯେ ସାରଥି ବିଜୟ
ବିଶ୍ୱାବସୁଙ୍କର ସେହୁ ଅଟଇ ତନୟ ।
ଭାଗ୍ୟବର ସାରଥି ଯେ ନକୁଳର ସାଥେ
ଅନଙ୍ଗ ସୁତ ସାରଥି ସହଦେବ ରଥେ ।
ଯୁଧିଷ୍ଠିରଙ୍କ ସାରଥି ଶାକଲ୍ୟ ବ୍ରାହ୍ମଣ
ବ୍ରହ୍ମାଙ୍କର ନାତି ସେହୁ ସୁତରେ ପ୍ରବୀଣ ।
ଧୃଷ୍ଟଦ୍ୟୁମନ ସାରଥି ଅରୁଣ ଅନୁଜ
ଦ୍ରୁପଦ ରଥେ ସାରଥି ଯେ ମକରଧ୍ୱଜ ।
ଜାମ୍ବୁନଦ ସାରଥି ଯେ ବିରାଟ ସଙ୍ଗତେ
ସାତ୍ୟକି ସାରଥି ଶ୍ୱେତକୁମାରର ରଥେ ।
ହରିସାଗର ବୋଲିଣ ଦକ୍ଷ ଏକ ଥିଲା
ଦୁର୍ଦ୍ଧକ୍ଷ ରଥରେ ସେହୁ ସାରଥି ହୋଇଲା ।

ସୁଭଦ୍ରାର ନନ୍ଦନ ଯେ ବୀର ଅଭିମନ୍ୟୁ
କେତୁକ ସାରଥି ତାର ବିଶ୍ୱାବସୁ ସୂନୁ ।
ଦ୍ରୁପଦ ନନ୍ଦନ ନାମ ଅଟଇ ଶିଖଣ୍ଡୀ
ସମର୍ଥକ ସାରଥି ଯେ ତାର ରଥ ମଣ୍ଡି ।
ହିଡ଼ିମ୍ବିକୀ ନନ୍ଦନ ଯେ ଘଟୋତ୍କଚ ବଳୀ
ତାହା ରଥରେ ସାରଥି ହେଲା କୃଷ୍ଣାବାଳୀ ।
ଶଙ୍ଖ ନାମରେ ରଥୀ ଯେ ବିରାଟର ସୁତ
ଚୈତନ୍ୟ ନାମେ ସାରଥି ବାହେ ତାର ରଥ ।
ଉତ୍ତରକୁମାର ଅଟେ ସୁଦେଷ୍ଣାର ବଳା
ତାହାର ରଥେ ସାରଥି ନାମ ଚନ୍ଦ୍ରକଳା ।
ଘଟୋତ୍କଚ ନନ୍ଦନ ଯେ ପାର୍ଥ ସମ ବୀର
ତାହାର ରଥେ ସାରଥି ନାମ ଦିବାକର ।
ଜରାସନ୍ଧ ସୁତ ସହଦେବ ଜୟସେନ
କୁମ୍ଭ ନିକୁମ୍ଭ ସାରଥି ଅଙ୍ଗିରା ନନ୍ଦନ ।
ଭୀଷ୍ମଙ୍କ ରଥେ ସାରଥି ନାମ ଭାନୁମତ
ଅରୁଣର ପଣନାତି ଇନ୍ଦ୍ରଙ୍କର ପୁତ୍ର ।
କ୍ଷତ୍ରିୟ ଭାରୋଇମଲ୍ଲ ଅଟେ ବୀର କର୍ଣ୍ଣ
ଶୋଷକ ସାରଥି ତାର ରଥେ ବିଦ୍ୟମାନ ।
ଦ୍ରୋଣଙ୍କର ରଥରେ ଯେ ବିଷାଦ ସାରଥି
ଅଗ୍ନିଦେବଙ୍କର ସେହୁ ଅଟେ ପଣନାତି ।
କୃପଙ୍କର ସାରଥି ଯେ ଭାଗ୍ୟବର ଗୁରୁ
ବିଶ୍ୱଦେବଙ୍କ ସୁତ ସେ ଅଇଲା ସ୍ୱର୍ଗରୁ ।
ଅଶ୍ୱତ୍ଥାମା ରଥେ ଏକଜଟା ଯେ ସାରଥି
ଗୋରେଖ ନନ୍ଦନ ସେହୁ ମତ୍ସ୍ୟେନ୍ଦ୍ରଙ୍କ ନାତି ।
କୁଷ୍ମାଣ୍ଡ ପୁତ୍ର ଅନନ୍ତ ସଦାଶିବ ନାମ
ଶଲ୍ୟଙ୍କ ରଥେ ସାରଥି ସେହୁ ବିଦ୍ୟମାନ ।
ବୈଲୋଚନ ନାମେ ବସୁ ଅନିଳର ପୁତ୍ର
ସାରଥି ହୋଇ ବାହିଲା ଭୂରିଶ୍ରବା ରଥ ।
ମହ୍ଲାର ଦେଶର ରାଜା ନାମ କଳାକେତି
ସୋମଦତ୍ତ ରଥରେ ସେ ହୋଇଛି ସାରଥି ।
ଜୟଧ୍ୱନି ରଥେ ସୁତ ନାମ ବାଲମୀକ
ଅଷ୍ଟକରା ସାରଥି ଯେ ରଥୀ ବୃନ୍ଦାଅର୍କ ।
କୁରୁକୁଳର ମଣ୍ଡନ ମାନଚକ୍ରବର୍ତ୍ତୀ
ତାହାର ରଥେ କୁମୁଦ ଅଟଇ ସାରଥି ।
ବାହୁଥିଲା ରାବଣର ରଥ ସବୁକାଳେ
ଦୁର୍ଯ୍ୟୋଧନ ରଥ ସେହୁ ବାହିଲା ଏକାଳେ ।
ଭ୍ରାତା ପୁତ୍ର ସେ କୁମର ନାମ ଅୟମତ
ଅହର୍ନିଶି ବାହଇ ସେ ଦୁଃଶାସନ ରଥ ।
ଗାଲବ୍ୟଙ୍କର ନନ୍ଦନ ମନ୍ତ୍ରୀ ଯେ ସଞ୍ଜୟେ
ଧୃତରାଷ୍ଟ୍ରଙ୍କର ରଥ ସେହୁ ବାହୁଥାଏ ।

ସିନ୍ଧୁ ଦେଶର ନୃପତି ନାମ ଜୟଦ୍ରଥ
ତାହାର ସାରଥି ଅନୁପମ ମନମଥ ।
କର୍ଣ୍ଣାଟ ଦେଶର ରାଜା ଅଟେ କର୍ଣ୍ଣକେଶୀ
ତାରଥ ବାହେକାମାକ୍ଷୀ ନାମରେ ଯେଦାସୀ ।
କାଶୀଦେଶ ରାଜା ନାମ ଅଟେ କାମେଶ୍ୱର
ଭୈରବ ସାରଥି ଥାଏ ତାହାର ରଥର ।
ମାଳବ ଦେଶର ରାଜା ନାମ କୃତବର୍ମା
ତାହାର ରଥେ ସାରଥି ମଳୟ ମହାତ୍ମା ।
ନିର୍ଝର ଦେଶର ରାଜା ନାମ ଗଣପତି
ତାହାର ରଥେ ସାରଥି ଅଟେ ଧନୁକେତି ।
ଅନେକ ରଥୀ ସାରଥି କହି କେ ସମର୍ଥା
ସଂକ୍ଷେପି କହିବାକୁ ମୁଁ ନୁହଇ ବକତା ।
ଅଛନ୍ତି କ୍ଷତ୍ରିୟମାନେ ମହା ମହାରାୟେ
ଠିକ ଠିକକରି ମୁହିଁ କହିଲି ଥୋକାଏ ।
ଏତେ ରଥିଙ୍କର ମଧ୍ୟେ ପାର୍ଥ ଶିରୋମଣି
ତାଙ୍କର ରଥ ସାରଥି ଦେବ ଚକ୍ରପାଣି ।
ଶ୍ୱେତହସ୍ତୀରେ ଆରୋହି ବିଜେ ଧର୍ମସ୍ୱାମୀ
ସମସ୍ତେ ବାହାର ହେଲେ ତହୁଁ ରଣଭୂମି ।
ବିରାଟ ରାଜନନ୍ଦନ ଶ୍ୱେତ ବଳବନ୍ତ
ଯୁଧିଷ୍ଠିର ବାନ୍ଧିଲେ ଯେ ମୁକୁଟ ତା ମାଥ ।
ବେନି ଥାଟର ମଧରେ ଶବଦ ଶୁଭିଲା
ବିରାଟ ନନ୍ଦନ ଶ୍ୱେତ ସେନାପତି ହେଲା ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଯେ ଉତ୍ତର ପଲାଣି
ସର୍ବଦଳ ମଧ୍ୟେ ଶ୍ୱେତ ଅଟେ ଆଗୁଆଣି ।
କୁରୁବଳ ଆଗେ ଯାନ୍ତି ଭୀଷ୍ମ ସେନାପତି
ତାଙ୍କ ଛାମୁରେ ମିଳିଲେ ଶ୍ୱେତ ମହାରଥୀ ।
ଭୀଷ୍ମ ବୋଇଲେ ତୁହିତ ବାଳୁତ ଅଜ୍ଞାନ
ତୋର ତୁଲେ କାହିଁ ମୋର ସମର ବିଧାନ ।
ସମରେ ଜିଣିଲେ ତୋତେ ନାହିଁ ପଉରୁଷ
ଯୁଦ୍ଧେ ବାଳକ ମାଇଲେ ହୁଏ ବଡ଼ ଦୋଷ ।
ଶୁଣିଣ ଶ୍ୱେତକୁମାର କୋପରେ ପ୍ରଜ୍ୱଳି
ଭୀଷ୍ମଙ୍କୁ ବିନ୍ଧିଲା ବୀର ବାଣ ଜ୍ୱଳାବଳି ।
ଅଦଭୁତେ ଶରବୃଷ୍ଟି ହୋଇଲା ଗଗନୁ
ଶ୍ୱେତକୁ ପ୍ରଶଂସା କଲେ ଗଙ୍ଗାଦେବୀ ସୁନୁ ।
ସାଧୁ ସାଧୁ ମହିମାରେ ସୁଦେଷ୍ଣାର ସୁତ
କାହା ପ୍ରସାଦେ ସମରେ ତୁ ଏଡ଼େ ସମର୍ଥ ।
ଶ୍ୱେତ କୁମାରକୁ ଆଡ଼ ହେଲେ ଭୀଷ୍ମ ରଥୀ
ଅର୍ଜୁନ ଛାମୁରେ ଯାଇ ମିଳିଲେ ଝଟତି ।
ବିରାଟ ନନ୍ଦନ ଶ୍ୱେତ ରଣରଙ୍ଗେ ମଜି
ଉଭୟ ଥାଟେ ପଶିଲା ବୀର ଗଜଗାଜି ।
ସାତ୍ୟକି ସାରଥି ତହୁଁ ବାହିଲା ତୁରଙ୍ଗ
ପବନ ସମାନେ ରଥ ବାହେ ବେଗ ବେଗ ।
ଯାଆନ୍ତେ ଭେଟିଲା ସେହୁ ବୀରବର କର୍ଣ୍ଣ
ଶ୍ୱେତ ଉପରକୁ ଶର କଲାକ ସନ୍ଧାନ ।
ଲୁହାଶରେ ଲାଗିଅଛି ଶଙ୍ଖଚିଲ ପକ୍ଷୀ
ଅପାର କାଳରୁ କର୍ଣ୍ଣ ତାହା ଥିଲା ରଖି ।
ଅଗ୍ନିଶର ପ୍ରାୟେ ବାଣ ପଞ୍ଚଷଠୀ ଗୋଟି
ପୂର୍ବରାଗ ଘେନି କର୍ଣ୍ଣ ତାହା କଲା ବୃଷ୍ଟି ।
ମେଦିନୀ ପୂରିଣ ତହିଁ ଘୋଟିଲାକ ବାଣ
ପ୍ରତିଦାନ କରି ଶ୍ୱେତ ବିନ୍ଧେ ପଞ୍ଚବାଣ ।
ପୁଣି କର୍ଣ୍ଣ ଘେନିଲା ଯେ ଶତେ ବଜ୍ରମୁନା
ଆକର୍ଷି ବିନ୍ଧିଲା ତାହା ହୋଇ କୋପମନା ।
ନାରାଚ ଆସନ୍ତେ ଦୂରୁ ଦେଖିଲା ଯେ ଶ୍ୱେତ
କର୍ଣ୍ଣ ଶରକୁ ଛେଦିଲା କରି ପ୍ରତିଅସ୍ତ୍ର ।
କାମ୍ୟକ ଶର ପ୍ରହାର କଲା ବୀରଶ୍ୱେତ
ଶରଘାଏ କର୍ଣ୍ଣବୀର ହୋଇଲା ଅଚେତ ।
ଯେଉଁପରି ବିବରରେ ପଶନ୍ତି ଉରଗେ
କର୍ଣ୍ଣର ଶରୀରେ ଶର ପଶିଲା ସେ ବାଗେ ।
ସମ୍ଭାଳ ସମ୍ଭାଳ ବୋଲି ଶ୍ୱେତ ଡ଼ାକଦେଲା
ସମ୍ଭାଳି ନ ପାରି କର୍ଣ୍ଣ ମୂର୍ଚ୍ଛାରେ ପଡ଼ିଲା ।
ଶ୍ୱେତର ସାରଥି ରଥ ନେଲା ଅପସରି
ସେହ୍ନା ଭେଦି କର୍ଣ୍ଣ ଦେହ ରୁଧିରରେ ପୂରି ।
କର୍ଣ୍ଣ ପଳାଇ ଯାଆନ୍ତେ ଭାଜିଲେ ସଇନୀ
କର୍ଣ୍ଣ ମାର କର୍ଣ୍ଣ ମାର ବୋଲି ଶୁଭେ ଧ୍ୱନି ।
କର୍ଣ୍ଣ ତୁଲେ ଅଠାଶୋଇ ସସ୍ତ୍ର ଥିଲେ ରଥୀ
କେହିଜଣେ ନରହିଲେ ସେଶ୍ୱେତର କତି ।
ଜାବୁଡ଼େ ଉଠିଲେ ବିରାଟର ତିନିପୁତ୍ରେ
ଏକମୁଖେ ବିନ୍ଧିଲେ ସେ ଶର ଅପ୍ରମିତେ ।
ପଞ୍ଚାଶ ରଥୀ ବେଢିଲେ ତିନି କୁମରଙ୍କୁ
ଅନର୍ଯ୍ୟାପ ବାଣମାନ ବିନ୍ଧିଲେ ତାହାଙ୍କୁ ।
ପଡ଼ିବାରୁ ବାଣମାନ ଆକାଶ ନ ଦିଶେ
ଅମାବାସ୍ୟାରେ ଯେସନ ଅନ୍ଧକାର ନିଶି ।
ସୂଚିମୂନ ବାଣମାନ ଘେନିଣ ବିରାଟି
ସେମାନଙ୍କ ଉପରକୁ କୋପେ କଲେ ବୃଷ୍ଟି ।
ଗଜ ଅଶ୍ୱ ପଦାତିରେ ପଡ଼ି ଶର ଭେଦି
ଶମନ ସଦନେ ଗଲେ ବହୁତର ଯୋଦ୍ଧୀ ।
ଶରଘାତୁଁ ଯେଉଁମାନେ ଉବୁରିଣ ଥିଲେ
ବିରାଟ ପୁତ୍ରେ ତାହାଙ୍କୁ ଗୋଡ଼ାଇ ମାଇଲେ ।
ଅଶ୍ୱରଥେ ଗଜେଯେତେ ରଥୀମାନେ ଥିଲେ
ସେସର୍ବ ଶରାଘାତରେ ଭାଜିପଳାଇଲେ ।
ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ତହୁଁ ବେଗେ ଆସି
ଦେଖିକରି ଦ୍ରୋଣଗୁରୁ ନାରାଚ ବରଷି ।
ଉତ୍ତର କୁମର ହେଲା ଦୁଃଶାର ଛାମୁରେ
ଶିଖଣ୍ଡୀ ମିଳିଲା ଅଶ୍ୱଥାମାର ଆଗରେ ।
ଅଶ୍ୱଥାମା ଶିଖଣ୍ଡୀକି ବୋଲେ ଆରେ ଶୁଣ
ଆଜି ପଡ଼ିଅଛୁ ତୁହି ମୋହର ଆଗେଣ ।
ଭଲବେଳେ ତୁହି ଆସି ପଡ଼ିଲୁ ଆଗର
ତୋତେ ମୁଁ ମାଇଲେ ରିଷ୍ଟ ଯିବ ଭୀଷ୍ମଙ୍କର ।

ପଚାରୁ ପଚାରୁ କୋପେ ଦ୍ରୋଣଙ୍କର ସୁତ
ଆକର୍ଷି ବିନ୍ଧିଲା ବେଗେ ଶର ଅପ୍ରମିତ ।
ପଡ଼ିଲେ ନାରାଚ ତିଳ ବୃଷ୍ଟିର ପରାୟେ
ସେହ୍ନା ଫୁଟି ଭେଦିଗଲା ଶିଖଣ୍ଡୀର କାୟେ ।
ଶୁଣ ଆହେ ଚଇତନ ଶିଖଣ୍ଡୀର ଗୁଣ
ରୋମେ ରୋମେ ଗଳିଅଛି କରୁଅଛି ରଣ ।
ଗନ୍ଧର୍ବାସ୍ତ୍ର ଶିଖଣ୍ଡୀକୁ କର୍ଣ୍ଣ ଦେଇଥିଲା
ସେ ଶର ଘେନିଣ ଅଶ୍ୱତ୍ଥାମାକୁ ବିନ୍ଧିଲା ।
ଅଶ୍ୱତ୍ଥାମା ଯେତେ ଶରମାନ ଯୋଚିଥିଲା
ଗନ୍ଧର୍ବ ଅସ୍ତ୍ରରେ ତାହା ଛେଦନ ହୋଇଲା ।
ଅଶ୍ୱତ୍ଥାମା ଯୋଚିଥିଲା ତିନିସସ୍ର ବାଣ
ତାହା ସହିତେ ଛେଦଲା ହସ୍ତୁ ଧନୁର୍ଗୁଣ ।
ଗୁଣ ଭେଦି ବାମଭୁଜେ ଯାଆନ୍ତେ ନିକିଳି
ଅଶ୍ୱତ୍ଥାମା ଧନୁକକୁ ନ ପାରିଲା ତୋଳି ।
ଅଶ୍ୱତ୍ଥାମାର ବିଅର୍ଥି ସାରଥି ଯେ ଦେଖି
ରଥ ଘେନି ପଳାଇଲେ ସମର ଉପେକ୍ଷି ।
ଅଶ୍ୱତ୍ଥାମା ଯାଆନ୍ତେଣ ଭାଜିଲେକ ବଳ
ଗୋଡ଼ାଇ କରି ଶିଖଣ୍ଡୀ ବିନ୍ଧେ ଅନର୍ଗଳ ।
ପାଦଗତିରେ ଗୋଡ଼ାଇ ଧାମଇଁ ଶିଖଣ୍ଡୀ
ଯୋଦ୍ଧାଙ୍କ ଉପରେ ନେଇ ପିଟଇ ଭୂଷଣ୍ଡୀ
ଏକା ପ୍ରହାରକେ ମାରେ ଦଶବିଂଶ ବଳ
କରଇ ଯେ କୁତୂହଳ ପଦ୍ମାବତୀ ବାଳ ।
ଅଶ୍ୱ ଗଜ ରଥୀମାନେ ପଡ଼ିଲେ ଭୂତଳେ
ଭାଙ୍ଗିଲେ କୌରବ ବଳ ନ ରହି ସେଠାରେ ।
ଭୀଷ୍ମ ଅର୍ଜ୍ଜୁନର ରଣ ହୁଏ ଘୋରତର
ବାଣ ବରଷନ୍ତି ଜିଣି ବରଷାର ଧାର ।
ହସ୍ତକୁହିଁ ହସ୍ତ ଦେଖାବନ୍ତି ସେହୁ ବେନି
ତିଳ ବର୍ଷା ପ୍ରାୟ ଶର ବିନ୍ଧନ୍ତି ସେ ଘେନି ।
ବେନି କ୍ଷତ୍ରିୟ ମିଳିଣ ମହାଯୁଦ୍ଧ କଲେ
ସକଳ ସଇନ୍ୟ ତହିଁ ରହିଣ ଦେଖିଲେ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାବଳୀ
ବିନ୍ଧଇ ନାରାଚ ଧନୁ ସର୍ବଦା କୁଣ୍ଡଳୀ ।
ଉଭୟ ଥାଟ ମଧ୍ୟରେ ଶ୍ୱେତ ଯେ ଶକତା
ସମର ସମ୍ପର୍କେ ସେହୁ ନ ଯାଇ ଗଣିତା ।
ସାରଥି ବାହେ ତୁରଙ୍ଗ ଅତ୍ୟନ୍ତ ବେଗରେ
ରଥ ରୁହାଇଲା ନେଇ ଦ୍ରୋଣଙ୍କ ଛାମୁରେ ।
ଭରଦ୍ୱାଜଙ୍କ ନନ୍ଦନ ଧନୁର୍ବିଦ୍ୟା ଗୁରୁ
ଇନ୍ଦ୍ରଦେବ ଶଙ୍କା କରେ ଯାର ଧନୁ ଧରୁ ।
ଶ୍ୱେତକୁ ଦେଖିଣ ପୁଚ୍ଛାକଲେ ଗୁରୁଦ୍ରୋଣେ
ପୃଥ୍ୱୀରେ କେ ଅଛି ମୋର ସଙ୍ଗେ କ୍ଷତ୍ରୀପଣେ ।
ତୁହିରେ ବାଳୁତପୁତ୍ର କିଛିହିଁ ନ ଜାଣୁ
ସମର କରିବାକୁ ତୁ ଖେଳ ପ୍ରାୟ ମଣୁ ।
ଶ୍ୱେତବୋଇଲା ସେକଥା ଛାଡ଼ି ଆହେଗୁରୁ
ଛାଗଳର ପ୍ରାକର୍ମେ କି ଟାଳିହୁଏ ମେରୁ ।

ଶୁଣି କୋପେ ପ୍ରତିବାକ୍ୟ ଦିଅନ୍ତି ଯେ ଗୁରୁ
ମୁହିଁ ସିନା ଛାଗଳ ରେ ତୁହି ଅଟୁ ମେରୁ ।
କେହୁଛେଳି କେହି ମେରୁଦେଖ ଆଜଯୁଦ୍ଧ
ଆଜରଣେ ତୋତେଯେବେ ନକରେ ମୁଁବଧ ।
ଶସ୍ତ୍ରକୁ ଛାଡ଼ିବି ଆଉ ରଣ ଉପେକ୍ଷିବି
ଛାଗଳ ପଦ ମୁଁ ଆଜୁଁ ମଞ୍ଚେ ବୋଲାଇବି ।
କାଳଚକ୍ରର ପ୍ରାୟେକ ବୁଲାଇଣ ଆଖି
ବିନ୍ଧିଲେ ନାରାଚ ଗୁରୁ ଉପ୍ରୋଧ ଉପେକ୍ଷି ।
ଶତେ ତୀକ୍ଷ୍ଣମୁନା ଶକ୍ତି କାଳାନ୍ତକ ପ୍ରାୟେ
କୋପେଣ ପେଷିଲେ ଭରଦ୍ୱାଜଙ୍କ ତନୟେ ।
ଦେଖିଣ ଶ୍ୱେତ ବିନ୍ଧିଲା ତୀକ୍ଷ୍ଣଶର ଗୋଟି
ଦ୍ରୋଣଙ୍କର ଶକତିକୁ ପକାଇଲା କାଟି ।
ପୁଣି କୁମାର ବିନ୍ଧିଲା ଘେନି ତୀକ୍ଷ୍ଣମୁନା
ଘାଏଣ ଭେଦିଲା ତାହା ଦ୍ରୋଣଙ୍କର ସେହ୍ନା ।
ନାରାଚ ବିନ୍ଧିବା ଦେଖି ଦ୍ରୋଣ ମହାରଥୀ
ସୂର୍ଯ୍ୟାବର୍ତ୍ତ ଶର ଘେନି ବିନ୍ଧିଲେ ଝଟତି ।
ନିଦାଘ ଶର ସେ ମହାଅନଳର ପ୍ରାୟେ
ରଥଘୋଟି ବ୍ୟାପିଲା ସେଶ୍ୱେତବୀର କାୟେ ।
ଅମୃତ ଶର ବିନ୍ଧନ୍ତେ ବିରାଟ କୁମର
ତ୍ରିଭୁବନ ବ୍ୟାପିଗଲା କାମରୂପୀ ଶର ।
ଶରେ ଶର ପରିତାଳ ହୋଇଲେକ ବେନି
ଦୁହିଙ୍କର ଗୁଣ ଘୋଷେ ପୂରିଲା ମେଦିନୀ ।
ଯେହ୍ନେ ଗଗନେ ଉଦୟ ହୋନ୍ତି ଅଂଶୁମାଳି
ସେହିପରି ଦିଶୁଅଛି ଶର ତେଜ ଝଳି ।
ତିରିଶ ନାରାଚ ପୁଣି ବିଦ୍ୟାଗୁରୁ ଘେନି
ତାହାକୁ ବିନ୍ଧିଲେ ବେଗେ ଶ୍ୱେତର ମୂର୍ଦ୍ଧନି ।
ପୁଣି ଶତେକ ନାରାଚ ପୂରାଇଣ ଦ୍ରୋଣ
ସାତ୍ୟକି ସାରଥି କି ଯେ ବିନ୍ଧିଲେ ତତ୍‌କ୍ଷଣ ।
ଚାରି ଅଶ୍ୱକୁ ବିନ୍ଧିଲେ ଚାରି ଚାରି ଶର
ସହସ୍ରେ ଶର ବିନ୍ଧିଲେ ଶ୍ୱେତର ଉପର ।
ଦ୍ରୋଣଗୁରୁଙ୍କ ନାରାଚ ନ ପଡୁଣୁ ରଣେ
କୋପରେ ବିନ୍ଧିଲା ଶ୍ୱେତ କାଳଚକ୍ର ବାଣେ ।
ଅନେକ ନାରାଚ ବିନ୍ଧିଥିଲେ ଦ୍ରୋଣଗୁରୁ
ଚକ୍ରାଘାତରେ ଛେଦନ ହୋଇଗଲା ଦୂରୁ ।
ଖଣ୍ଡା ଫିରିକି ନାରାଚ ଦ୍ରୋଣ ପ୍ରହାରିଲେ
ମୁଦ୍‌ଗର ବାଣେ ତାହା ଶ୍ୱେତ ନିବାରିଲେ ।
ସହସ୍ର ମୁନା ପେଷିଲେ ଦ୍ରୋଣ ସେନାପତି
ସୂର୍ଯ୍ୟାବର୍ତ୍ତ ଶରେ ତାହା ଶ୍ୱେତ ଯେ ନିପାତି ।
ଅରୁଣ କିରଣ ଜାଣ ତା ଜ୍ୟୋତି ପ୍ରକାଶି
ଦ୍ରୋଣଙ୍କର ଶର ଶ୍ୱେତ କୁମାର ବିନାଶି ।
କୋପେଣ ହାବୋଡ଼ାଶର ବିନ୍ଧୁ ଶ୍ୱେତବୀର
ଦ୍ରୋଣଙ୍କ ରଥେ ପଡ଼ିଲା ବିଜୁଳି ଆକାର ।
ପୁଣ ପୁଣ ଶ୍ୱେତବୀର ବିନ୍ଧେ ଗଳଗାଜି
ବାଣ ପଡ଼ନ୍ତେ ଦ୍ରୋଣଙ୍କ ରଥ ଗଲା ଭାଜି ।

ଆନ ରଥ ଆରୋହିଲେ ଭରଦ୍ୱାଜ ବଳା
ସମରେ ଗୁରୁ ବିନ୍ଧନ୍ତି ଶର ସସ୍ତ୍ରକଳା ।
ଦ୍ରୋଣ ଶ୍ୱେତ ଦୁହିଙ୍କର ଏମନ୍ତ ସମର
କହିବାକୁ ଅସମ୍ଭବ ଦେବେ ଅଗୋଚର ।
ଦୁଃସହ ସଂଗ୍ରାମ ହେଲା ଦୁଇ କ୍ଷତ୍ରିଙ୍କର
ରୁଧିରରେ ବିଲେପନ ଦୁହିଙ୍କ ଶରୀର ।
ଶରଦ କାଳରେ ଯେହ୍ନେ ଗର୍ଜେ ମେଘମାଳ
ସେହିପରି ଶବ୍ଦ ଶୁଣି ତ୍ରାସିଲେ ସକଳ ।
ଶର ଆତଯାତେ ଯେହ୍ନେ ବରଷଇ ପାଣି
କ୍ଷତ୍ରିବର ସୁନ୍ଦର ସେ ବୀର ଚୂଡ଼ାମଣି ।
ବିଜୟେ ଶ୍ୱେତକୁମାର ଯୁଦ୍ଧେ ମହାରଥୀ
ଦୁଇବଳ ମଧ୍ୟରେ ସେ ଅଟଇ ଶକତା ।
କୋଟିଏକ ଯୋଦ୍ଧା ଘେନି ହିଡ଼ିମ୍ବୀ ଆତ୍ମଜ
ସମରେ ପଶିଲା ସେହି ଦୈତ୍ୟକୁଳ ରାଜ ।
ସେହି ଅସୁର ଅଟନ୍ତି ପୁଣି କାମରୂପୀ
ତିନିପୁର କ୍ଷଣକରେ ପାରନ୍ତି ସେ ବ୍ୟାପି ।
ବେନି ହସ୍ତେ ଗଜ ଧରି ବୁଲାଇଣ ପିଟି
ଉପରକୁ ଫୋପାଡ଼ିଣ ବିସ୍ତାରିଣ ପାଟି ।
ଅଶ୍ୱମାନଙ୍କୁ ଧରିଣ ବୁଲାଇ ପ୍ରଚଣ୍ଡ
ଉପରକୁ ଫୋପାଡ଼ିଣ ପାତନ୍ତି ସେ ତୁଣ୍ଡ ।
ଅନେକ ନାରାଚମାନ ବିନ୍ଧନ୍ତି କୌରବେ
ତୁଣ୍ଡ ବିସ୍ତାରିଣ ତାହା ଗିଳନ୍ତି ଦାନବେ ।
ଦୈତ୍ୟଙ୍କୁ ଦେଖି ଭାଜିଲେ କଉରବ ସୈନ୍ୟ
ତାହା ଦେଖିଣ ଧାଇଁଲା ବୀର ଦୁଃଶାସନ ।
ସତୁରି ସତୁରି ଭାର ଗଦା ବେନି ହସ୍ତେ
ସନ୍ଧ୍ୟାକାଳେ ଯେସନେକ ଦିଶନ୍ତି ପର୍ବତେ ।
ରେ ରେକାର କରିଣ ଯେ ଦୁଃଶାସନ ଉଠି
ଘଟଉତ୍କଚ ଉପରେ ଗଦା ଘେନି ପିଟି ।
ଗରଜିଣ ଉଠିଲା ସେ ହିଡ଼ିମ୍ବିକୀ ବାଳ
ବାଜନ୍ତେଣ ଗଦାଗୋଟି ହେଲା ବେନିଫାଳ ।
ହିଡ଼ିମ୍ବିକୀର ନନ୍ଦନ ଗଦା ଘେନି ପିଟି
ସେ ଘାତରେ ଦୁଃଶାସନ ପଡ଼ିଲା ଲେଉଟି ।
ଗିରିବର ପଡ଼ିଲା କି ଆସି ହୃଦଗତେ
ଦୁଃଶା ଅଚେତ ହୋଇଲା ଦୈତ୍ୟ ଗଦାଘାତେ ।
ମୋହରେ ପଡ଼ିଲା ଯହୁଁ ବୀର ଦୁଃଶାସନ
ଅସିପତ୍ର ଘେନି ଦୈତ୍ୟ ଧାଇଁଲା ବହନ ।
କ୍ଷଣକେ ଚେତା ପାଇଲା ଧୃତରାଷ୍ଟ୍ର ବଳା
ସାଷ୍ଟାମ ହୋଇଣ ସେହୁ ତହୁଁ ପଳାଇଲା ।
ଆରେ ଆରେ ବୋଲିଧାଇଁ ଘଟୋତ୍କଚ ବୀର
ରହ ଆରେ ଦୁଃଶା କିପାଁ ଉପେକ୍ଷୁ ସମର ।
ଏହିକ୍ଷଣି ତୋତେ ମୁହିଁ ମାରନ୍ତି ରେ ଦୁଃଶା
ତୋର ରକ୍ତକୁ ଦ୍ରୌପଦୀ କରିଅଛି ଆଶା ।
ତୋ ଭୁଜକୁ ଉପାଡ଼ିବେ ବୀର ଭୀମସେନ
ସେ ରକ୍ତେ ପାଞ୍ଚାଳୀ କେଶ କରିବେ ବନ୍ଧନ ।
ପଳାଇ ଯା ଦୁଃଶାସନ ଲୁଚ ହସ୍ତିନାରେ
ଆଉବେଳେ ନ ପଶିବୁ ଏ ମହାସମରେ ।
ଭୀଷ୍ମଦେବ ଅରଜୁନ ସମର କରନ୍ତି
ଅଗଣିତ ଶର ଦୁହେଁ ବିନ୍ଧାବିନ୍ଧି ହୁନ୍ତି ।
ଶ୍ୱେତକୁମାର ସମର ଦ୍ରୋଣଙ୍କଉ ତୁଟଲେ
ଦିନକର ନାଥ ଆସି ମଧ୍ୟେ ବିଜେ କଲେ ।
ଭରଦ୍ୱାଜଙ୍କ ନନ୍ଦନ ସମରେ ବିମୁଖ
ବିନ୍ଧି ବିନ୍ଧି ଗୁରୁ ମନେ ପାଇଲେଣି ଦୁଃଖ ।
ଶ୍ୱେତ କୁମାରକୁ କେବେ ଜିଣି ନ ପାରିଲେ
କୋପେଣ ଗୁରୁ ପୁନଶ୍ଚ ଧନୁକୁ ଧଇଲେ ।
କୁହୁକ ଶର ବିନ୍ଧଲେ କୋପେ ଦ୍ରୋଣଗୁରୁ
ସୂର୍ଯ୍ୟାବର୍ତ୍ତ ଶରେ ଶ୍ୱେତ ନିବାରିଲେ ଦୂରୁ ।
ପୁଣି ଅଗ୍ନିବାଣ ବିନ୍ଧୁ ଭରଦ୍ୱାଜ ସୁତ
ଜଳଧାରା ଶରେ ତାହା ନିବାରିଲେ ଶ୍ୱେତ ।
ଅଗ୍ନିର ତେଜ ହୋଇଲା ଯହୁଁ ନିବର୍ତ୍ତନ
ସର୍ବେ ପ୍ରଶଂସନ୍ତି ଶ୍ୱେତ ମହିମା ତୋ ଧନ୍ୟ ।
ପୁଣି ପର୍ବତାଶରକୁ ପେଷିଲେକ ଗୁରୁ
ଗର୍ଜିଣ ପର୍ବତମାନ ପଡ଼ନ୍ତି ଶୂନ୍ୟରୁ ।
କୁମାର ଦେଖିଣ ଯହୁଁ ପରବତ ବୃଷ୍ଟି
ବଜ୍ରଶରେ ତାହା ସବୁ ଛେଦିଲା ବିରାଟି ।
ଦ୍ରୋଣ ପ୍ରଶଂସନ୍ତି ଶ୍ୱେତ ମହିମା ତୋ ଧନୀ
କେବଣ ଲକ୍ଷଣେ ଜାତ କଲା ତୋ ଜନନୀ ।
ଏହା କହି ଦ୍ରୋଣ ମେଘଶରକୁ ପେଷିଲେ
ପବନା ଶରରେ ଶ୍ୱେତ ତାହା ନିବାରିଲେ ।
ପବନ ଯୋଗେ ଉଡ଼ିଣ ଗଲେ ମେଘଗଣ
ବହୁତ ପ୍ରତିଜ୍ଞାକରେ ବିରାଟ ନନ୍ଦନ ।
ପନ୍ନଗ ଶର ପୂରାଇ ପେଷିଲେକ ଗୁରୁ
ପୃଥିବୀ ପୂରିଲେ ସର୍ପେ ଟେକିକରି ଫେରୁ ।
ଖଗବର ବାଣେ ଶ୍ୱେତ ତାହାକୁ ନିବାରି
ଦେଖିଣ ସର୍ପେ ବିବରେ ପଶିଲେକ ଡ଼ରି ।
ସଂଗ୍ରାମ ହୁଅନ୍ତେ ବେଳ ତୃତୀୟ ପ୍ରହର
ଯୁଦ୍ଧ କରିଣ ବିମୁଖ ହେଲେ ବେନି ବୀର ।
ବହୁତ ପ୍ରଶଂସା ଗୁରୁ କରନ୍ତି ଶ୍ୱେତକୁ
ବାଳୁତ କୁମର ହୋଇ ଜିଣିଲା ଆମ୍ଭଙ୍କୁ ।
ପୁଣ ଦ୍ରୋଣ ମହାରଥୀ କମ୍ପି ମହାକୋପେ
ଶରେକ ତୂଣୀରୁ କାଢ଼ି ବସାଇଲେ ଚାପେ ।
ବ୍ରହ୍ମଶର ବୋଲିଟି ଯେ ଅପାଳଟ ଶର
ତାକୁ ପେଷିଲେ ଶତ୍ରୁକୁ ନିଏ ଯମଘର ।
ରୁଦ୍ରଶର ଅମୋଘ ଯେ ବଜ୍ରମୁନା ଭେଦି
ଏ ଶର ପେଷିଲେ ନିଶ୍ଚେ ଶତ୍ରୁ ଦିଏ ଛେଦି ।
ଏ ଶର କାଢ଼ିଲେ ଗୁରୁ ଅପମାନ ଭୟେ
ନ ମାରିଲେ ଶତ୍ରୁକୁ ଏ ନ ଫେରେ କେବେହେଁ ।
ସେହି ଅସ୍ତ୍ରକୁ ଯୋଚନ୍ତେ ଚାପେ ଗୁରୁଦ୍ରୋଣ
ଦେଖୁଥିଲେ ଆକାଶରେ ରହି ଦେବଗଣ ।

ବୋଇଲେ କିଞ୍ଚିତ ରଣେ ଏଡ଼େ ରାଗ ହୋଇ
ବ୍ରହ୍ମ ଅସ୍ତ୍ରକୁ ଧରୁଛି କ୍ଷୁଦ୍ର କ୍ଷତ୍ରୀ ପାଇଁ।
ରେ ନିର୍ବୋଧ ଶୁଣ କହୁଁ ଶିଶୁ ଯେହୁ ମାରି
ପ୍ରତିଜ୍ଞା ତା ନାଶ ଯାଇ ବ୍ରହ୍ମହତ୍ୟା ସରି।
ଧିକ ତୋର ଦ୍ରୋଣ ନାମ ଧିକ କ୍ଷତ୍ରି ପଣ
ଧିକ ତୋ ବାହୁକୁ ଯାହା ଧରୁ ବ୍ରହ୍ମବାଣ।
କୋଟିଏ ସୂର୍ଯ୍ୟର ତେଜ ସେହି ବ୍ରହ୍ମଶର
ତାହାଦେଖି ଦେବଲୋକେ ହୋଇଲେଅନ୍ତର।
ଅସ୍ତ୍ର ଦେଖିଣ ତ୍ରାସିଲେ ଉଭୟ ସଇନ୍ୟ
ତ୍ରିପୁରଂ ଅନ୍ତକ ପ୍ରାୟେ ଦେଖାଗଲେ ଦ୍ରୋଣ।
ଗୋବିନ୍ଦ ଡ଼ାକିଲେ ଥାଇ ନନ୍ଦିଘୋଷ ରଥେ
ହେ ସାତ୍ୟକି ଆମ୍ଭ କଥା ଶୁଣ କର୍ଣ୍ଣପଥେ।
ଦ୍ରୋଣଗୁରୁ ପେଷୁଛନ୍ତି ଏବେ ବ୍ରହ୍ମଶର
ଶ୍ୱେତର ରଥକୁ ତୁମ୍ଭେ ଘୁଞ୍ଚାଅ ସତ୍ୱର।
ଶୁଣିଣ ସାତ୍ୟକି ବେଗେ ରଥ ଘୁଞ୍ଚାଇଲା
କୃଷ୍ଣଙ୍କ କଥନେ ରଥ ଶୂନ୍ୟଗତି ହେଲା।
ଶ୍ୱେତ ବୋଇଲା ସାତ୍ୟକି କଲୁ ହୀନକର୍ମ
କିସ ଅର୍ଥେ ଛଡ଼ାଇଲୁ ମୋହର ସଂଗ୍ରାମ।
ଜନମୁଖେ ଅପଖ୍ୟାତ ଯୁଦ୍ଧରେ ଅଯଶ
କ୍ଷତ୍ରୀଏ ଶୁଣିଲେ ମୋତେ ବୋଲିବେଟି କିସ।
ସାତ୍ୟକି ବୋଇଲା ଦ୍ରୋଣ ବ୍ରହ୍ମଅସ୍ତ୍ର କଲା
ତାହା ଦେଖି କୃଷ୍ଣଙ୍କର ଶଙ୍କା ଜାତ ହେଲା।
ଶ୍ୱେତ ବୋଲେ ଏସନକ ନୁହଇ ସାତ୍ୟକି
ବହନ ମୋ ରଥ ନିଅ ଦ୍ରୋଣଙ୍କ ତହିଁକି।
ରଣେ ନିସତ ହୋଇ କି କ୍ଷତ୍ରିପଣ କଲେ
ଅଯଶ ଯଶ ହୁଅଇ ରଣରେ ପଶିଲେ।
ଶୁଣିଣ ସାତ୍ୟକି ବେଗେ ନେଲା ରଥ ବାହି
ଦ୍ରୋଣଙ୍କ ସମ୍ମୁଖେ ଶ୍ୱେତ ରଥ କଲା ନେଇ।
ବ୍ରହ୍ମଅସ୍ତ୍ର ତେଜ କୋଟି ପ୍ରଜ୍ୱଳିତ ଅଗ୍ନି
ଦେଖିଣ ସାତ୍ୟକି ଡେଇଁ ପଡ଼ିଲା ଅବନୀ।
ବହୁ ତୀକ୍ଷ୍ଣ ଶରମାନ ବିନ୍ଧିଲା ବିରାଟି
କକଡ଼ା ମାସରେ ଯଥା ଘନ ହୁଏ ବୃଷ୍ଟି।
ସେହି ନାରାଚେ ସମସ୍ତ ଦହିଯ୍ୟ ହୋଇଲା
ଶ୍ୱେତ ବକ୍ଷେ ବ୍ରହ୍ମଅସ୍ତ୍ର ଯାଇଣ ପଡ଼ିଲା।
କୋଟିଏ ଅଗ୍ନିର ତେଜ ସେହି ବ୍ରହ୍ମଅସ୍ତ୍ର
ପଡ଼ିଣ ଶ୍ୱେତ ବୀରକୁ କରିଦେଲା ହତ।
ତେରଘଡ଼ି ସଂପୂର୍ଣ୍ଣ ଯେ ଦିନକର ନାଥ
ଏ ବେଳେ ବ୍ରହ୍ମଅସ୍ତ୍ରରେ ଶ୍ୱେତବୀର ହତ।
ଆକାଶ ମାର୍ଗରେ ଥିଲେ ଯେତେ ବ୍ରହ୍ମଲୋକ
ଦ୍ରୋଣକୁ ଧିକ୍କାର କଲେ ସର୍ବ ବୃନ୍ଦାରକ।
ଶ୍ୱେତକୁମାର ନିଧନ ଶୁଭିଲା ସମରେ
ଜୟଶଙ୍ଖ ବଜାଇଣ ଗଲେ କୁରୁବୀରେ।
ସାତ୍ୟକିଠାରୁ ବିରାଟ ସମସ୍ତ ଶୁଣିଲେ
ଆହା ପୁତ୍ରବୋଲି ରାଜା ଭୂମିରେ ପଡ଼ିଲେ।

ବାବୁରେ ଶ୍ୱେତ ତୁ ଅଟୁ ଏଡ଼େ ବଳବନ୍ତ
ବାଇଶି ବରଷେ ତୁହି ଏଡ଼େକ ଶକତ।
ମୋତେମରଣ ନୋହିଲା ତୋର ମୁଖଚାହିଁ
ସମୁଦ୍ରେ ପଡ଼ିବି ବଳା ପ୍ରାଣେ ଆଶାନାହିଁ।
କୁଳର ମଣ୍ଡନ ବାବୁ କେଣେ ଚାଲିଗଲୁ
ଏ ମହାଭାରତ ରଣେ ଯଶ ରୁହାଇଲୁ।
ଭୀଷ୍ମ ଦ୍ରୋଣଙ୍କୁ ସମରେ ତୁ ହେଲୁ ଶକତ
ସେମାନ ସୁମରି ମୋର ହୃଦେ ଗୁରୁଚିନ୍ତା।
ବହୁତ ଶୋକ କରନ୍ତି ପାଣ୍ଡବ ସଇନି
ଶ୍ୱେତଥିଲେ କୌରବେ କିଯାନ୍ତେ ପ୍ରାଣଘେନି।
ଶଙ୍ଖ ଉତ୍ତରର ଶୋକ କେହୁ କହିପାରି
କେଉଁ କତି ଗଲୁ ଭାଇ ଅନାଥ ତୁ କରି।
ଏପରି ଶୋକ କରନ୍ତି ଶିରେ କର ତାଡ଼ି
ତାର ମୃତ ପିଣ୍ଡଗୋଟି ନ ପାଆନ୍ତି ଲୋଡ଼ି।
ବେଳ ଅବଶେଷେ ଅସ୍ତ ଗଗନ ବିହାରୀ
ରହିଲେ ପାଣ୍ଡବେ ଯାଇ ବରୁଣା ନଗରୀ।
ସ୍ନାହାନ ଭୋଜନ ନାହିଁ ଦେବାର୍ଚ୍ଚନ କିଛି
ବିରାଟକୁ ଆଶ୍ୱାସନା କରନ୍ତି ଶ୍ରୀବତ୍ସି।
ସେହି ଦେବ ମାୟାଧର ପରମପୁରୁଷ
ଯାହାର ବାକ୍ୟ ଶୁଣିଲେ ଶୋକ ହୁଏ ଧ୍ୱଂସ।
ହରି ବୋଲନ୍ତି ହେ ରାଜା ଶୋକ କି କାରଣ
କ୍ଷତ୍ରିୟେ ଶୋକ କରିବା ଅଟେ ଅକାରଣ।
ତୋହର ପୁତ୍ର ଶ୍ୱେତ ଯେ ପଡ଼ିଲାକ ରଣେ
ଦେଖ ତାକୁ ଦେବେ ନ୍ୟନ୍ତି ପୁଷ୍ପକ ବିମାନେ।
ଦେବ ଦୁନ୍ଦୁଭି ବଜାଇ ତାହାର ଅଗ୍ରତେ
ଖଟନ୍ତି ଯେ ବିଳାସିନୀ ତାଣ୍ଡବର ନୃତ୍ୟେ।
ବିଦ୍ୟାଧରୀଏ ଚାମର ଢାଳୁଛନ୍ତି ଧରି
କୁବେର ଅମ୍ଳାନ ବସ୍ତ୍ର ଖଟେ ନେଇକରି।
ଦେଖ ବୋଲି ବିରାଟକୁ ଦେଖାନ୍ତେ ଶ୍ରୀବତ୍ସ
ଆକାଶେ ଚାହିଁ ଦେଖିଲେ ବିରାଟ ପ୍ରତ୍ୟକ୍ଷ।
ଦେଖିଣ ସାନନ୍ଦ ହେଲା ବିରାଟ ନୃପତି
ଛାଡ଼ିଲା ଶୋକଅବସ୍ଥା ମନୁ ଗଲା ଭ୍ରାନ୍ତି।
ଯହୁଁ ସେ ଦେଖିଲା ରାଜା ଶ୍ୱେତ ପୁରୁଷାର୍ଥ
ଦୁଃଖ ଛାଡ଼ିଣ ମନରେ ହୋଇଲା ଉସତ।
ସାଧୁ ସାଧୁ ମହିମା ଏ ଭାରତର କଥା
ସାଧୁ ସେ ଯେତେ ପଡ଼ିଲେ ଯୁଦ୍ଧେ ମହାରଥା।
ଜୀବନ ତାହାଙ୍କ ଧନ୍ୟ ବଂଶ ତାଙ୍କ ଧନ୍ୟ
କୋଟି ତୀର୍ଥ ସମ ନୁହେ ଭାରତ ସମାନ।
ବହୁ ଜପ ଅଶ୍ୱମେଧ ତୀର୍ଥ ପର୍ଯ୍ୟଟନ
ନିତ୍ୟକର୍ମ ମନ୍ତ୍ର ନାନା ଉପାଧି ବିଧାନ।
ଅନ୍ନଦାନ ବସ୍ତ୍ରଦାନ ଗଜ ଜଳଦାନ
ରଣଯଜ୍ଞ ଦାନକୁ ଏ ନୁହଇ ସମାନ।
ବହୁତ ପାତକ ଯେବେ ହୋଇଥାଏ ବଂଶେ
ଆପେ ତରଇ ବସାଏ ବଂଶ ସ୍ୱର୍ଗଦେଶେ।

କ୍ଷତ୍ରିୟ ହୋଇଣ ଯେବେ ହୋଇ ଶସ୍ତ୍ରଧାରୀ
ରଣଯଜ୍ଞ କଲେ କୋଟି ଅଶ୍ୱମେଧ ସରି।
ତେସନ ପୁତ୍ର ଗୋଟିଏ ହୋଇ ଯେବେ ବଂଶେ
କୋଟିଏ ପୁରୁଷ ଘେନି ବସେ ସ୍ୱର୍ଗଦେଶେ।
ଗୋବିନ୍ଦଙ୍କର ବଚନେ ମସ୍ୟ ଅଧିପତି
କୋପକୁ ଛାଡ଼ି କରିଣ ଲଭିଲା ଦୃପତି।
ଜୟ ତୁ ଯମଦଗ୍ନିର ସୁତ ପର୍ଶୁରାମ
ରେଣୁକାର ଗର୍ଭୁ ଜାତ କୃତାନ୍ତକ ସମ।
ଲଲାଟେ ହରିମନ୍ଦିର ଶିରେ ଜଟାଭାର
ଭୁଜେ ଅଜଗବ ଧନୁ ପର୍ଶୁ ଶୋହେ କର।
ପୀତବର୍ଣ୍ଣର କାଛୋଟି କଟିରେ ଶୋଭିତା
ଯଜନ ଯାଜନ ଆଉ ତ୍ରିଗୁଣ ପଇତା।
ଆହାର ମୈଥୁନ ନିଦ୍ରା ଏ ତିନି ତିଆଗୀ
ବେନି କର୍ଣ୍ଣରେ କୁଣ୍ଡଳ ମହାନନ୍ଦେ ଯୋଗୀ।
ପ୍ରଜାଙ୍କ ହିତେ ଘଣ୍ଟିକୁ ବାନ୍ଧିଲେ ଜାନୁରେ
ତେଣୁ ଜାନୁଘଣ୍ଟ ନାମ ବହିଲେ କ୍ଷିତିରେ।
ବୀରମାନଙ୍କ ବିକ୍ରମ ନ ଦେଖି ଯେ ଡୋଳେ
ସସ୍ତ୍ରବାହୁ ନାଶଗଲା ତୁମ୍ଭ କୋପାନଳେ।
ବକାସୁର ନାଶଗଲା ଯାହା କୋପାନଳେ
ତାହାର ପାଦରେ ଏବେ ଶିର ମୋର ଲୁଳେ।
ଚାରିଭାଇ ମାତା ଶିର କମଳକୁ କାଟି
ପିତା ଯମଦଗ୍ନିଙ୍କର ଆଜ୍ଞାକୁ ନ ମେଣ୍ଟି।
ପୁଣି ବିନୟେ ପିତାଙ୍କୁ ମାଗିଲେ ଯେ ବର
ମାତାସହ ଜୀଆଇଁଲ ଚାରି ସହୋଦର।
ପିତାଶତ୍ରୁ ସସ୍ତ୍ରାର୍ଜ୍ଜୁନ ସଙ୍ଗେ ହୋଇ ବାଦୀ
ତାହାର ଶିରକମଳ ପକାଇଲ ଛେଦି।
ମନ୍ତ୍ରଗୁରୁ ଦେବଗୁରୁ କ୍ଷତ୍ରୀଙ୍କର ଗୁରୁ
ଜାତଗୁରୁ ଅଗ୍ନି ଗୁରୁ ଅଟ ବିଦ୍ୟାଗୁରୁ।
ଏକବିଂଶ ବାର ତୁମ୍ଭେ ଏ ମହୀମଣ୍ଡଳେ
ନିକ୍ଷତ୍ର କରିଲ ଦେବ ନିଜ ଭୁଜବଳେ।
ଏକ କୁଠାରକେ ହେଳେ ସମସ୍ତେ ପ୍ରାଭବୀ
ରୁଧିର ତର୍ପଣ କରି ତୋଷିଲ ଭୈରବୀ।
ବୈକୁଣ୍ଠ ଠାକୁର ତୁମ୍ଭେ ଦେବଙ୍କ ଦେବତା
ଅନନ୍ତ କୋଟି ପୃଥ୍ୱୀରେ ଭାରକୁ ହରନ୍ତା।
ପରିଧାନ ଯାର କୃଷ୍ଣସାର ଚର୍ମଗୋଟି
ବ୍ୟାଘ୍ର ଲାଞ୍ଜ ଗୋଟି ଯାର କଟିରେ କାଛଟି।
ପଦ୍ମାବତୀ ବଲ୍ଲଭ ଯେ ବହୁ ତାର ବୁଦ୍ଧି
ଏକା ନାରାଚକେ ସପ୍ତଦ୍ୱୀପ ପାରେ ସାଧି।
ରକତ କୁମୁଦ ଚକ୍ଷୁ ମଧ୍ୟେ କଳାଡୋଳା
ବକପନ୍ତି ଯେଉଁପରି ଦିଶେ ମେଘମାଳା।
ବିଭାବସୁ ତାରିଲ ଯେ ଗଜ ଖଗ ବାଦେ
ଯତି ହେଲ ପର୍ଶୁରାମ ଅବତାର ମଧ୍ୟେ।
ଅଭିନବ ସୁନ୍ଦର ସେ ଜଳଧର ମୂର୍ତ୍ତି
ଅଜପା ସାଧନ ନାଥ କଷ୍ଟାନ୍ତର ସ୍ଥିତି।
ଆୟୁର୍ଜ୍ୟୋତି ଧନୁର ଯେ ଅଟେ ଶିଶୁମୁନା
ଶୂନ୍ୟରୁଦ୍ର ଆକର୍ଣ୍ଣିତ ଯେ କବଚ ସେହ୍ନା।
ପରିଧେୟ ସୁବସନ ରକ୍ତବର୍ଣ୍ଣ ଆଖି
ଯାର ନୀଳାମ୍ବର ରୂପେ କମଳହିଁ ସାକ୍ଷୀ।
ତ୍ରୈଲୋକ୍ୟ ସଞ୍ଚିତ ଯେ ବ୍ରହ୍ମାଣ୍ଡ ଶିରୋମଣି
ପରଂଗତି ଦିଏ ଯେହୁ ମାଗନ୍ତେଣ ପ୍ରାଣୀ।
ଗଳୁଅଛି ସୁଧାରସ ଯା ବଦନ ଗୋଟି
ମମ ପୁଣ୍ୟବଳେ ପ୍ରଭୁ ତାହାଙ୍କୁ ମୁଁ ଭେଟି।
ତାମ୍ରମୁଖ ଅମୃତାକ୍ଷ ଅଟେ ଯାର ଦୃଷ୍ଟି
କହିଲି ମୁଁ ଶ୍ରୀଭାରତ କୃଷ୍ଣଲୀଳା ଏଟି।
ଶୂଦ୍ରମୁନି ଶାରଳା ଯେ କରଇ ବିନତି
ପର୍ଶୁରାମ ଚରଣରେ ସଦା ତାର ମତି।

☆ ☆ ☆

## ଷଷ୍ଠଦିନ ଯୁଦ୍ଧେ ଭୀଷ୍ମଙ୍କ ଅମୋଘ ଶକ୍ତି ପ୍ରେରଣ ଓ ଶ୍ରୀକୃଷ୍ଣଙ୍କ ଚକ୍ରଦ୍ୱାରା ତାହା ଛେଦନ ଏବଂ ବଳରାମଙ୍କ ତୀର୍ଥ ଭ୍ରମଣ

ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ଷଷ୍ଠ ଦିବସ ଯୁଦ୍ଧର ଯେଉଁପରି ରୀତି।
କୌରବ ପାଣ୍ଡବ ଦୁହେଁ ବଡ଼ଇ ମୁରାଟ
ସମରେ ମିଳିଲେ ଯାଇ ଦୁଇବଳ ଥାଟ।
ହୋଇଲା ସଂଗ୍ରାମ ତହିଁ ଭୀଷ୍ମ ଅର୍ଜ୍ଜୁନର
ଅନୁକ୍ଷଣେ ବିନ୍ଧନ୍ତି ସେ ତୀକ୍ଷ୍ଣ ତୀକ୍ଷ୍ଣଶର।
ଶ୍ୱେତର ମୃତ୍ୟୁ ହୁଅନ୍ତେ ରାଗରେ ବିରାଟ
ଶଙ୍ଖ ଉତ୍ତରକୁ ଘେନି ବାହିଲା ସେ ଥାଟ।
ସମରକୁ ବାହାରିଲେ ଦ୍ରୁପଦ ନୃପତି
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ସଙ୍ଗତେ ଅଛନ୍ତି।
ଜରାସନ୍ଧ ସୁତ ସହଦେବ ନରପତି
ତେଇଶ କ୍ଷଉଣୀବଳ ଅଶୀକ୍ଷୌଣୀ ହସ୍ତୀ।
ଗଜ ଯୋଦ୍ଧା ଘେନିଗଲେ ପଚାଶ ପରାର୍ଦ୍ଧ
କଳିଙ୍ଗସେନର ତୁଲେ ଲଗାଇଲେ ଯୁଦ୍ଧ।
ଉଦୟମଣ୍ଡଳ ରାଜା ମାନଚକ୍ରବର୍ତ୍ତୀ
ନିର୍ଝର ଦେଶର ରାଜା ନାମ ଗଣପତି।
ଏହି ବେନିରାଜା ତହିଁ କରିଲେ ସମର
କୃପବର୍ମା ସହିତରେ ନୃପ ଗଣେଶ୍ୱର।
ପଞ୍ଚାଣ ଦେଶର ରାଜା ଅନଙ୍ଗ ନୃପତି
ତା ତୁଲେ ସମର କଲା ଭୀମ ଚକ୍ରବର୍ତ୍ତୀ।
ହିଡ଼ିମ୍ବିକୀ ସୁତ ଘଟଉକ୍ରଚ ରାକ୍ଷସ
ଅଳମ୍ବୁଷ ତୁଲେ ଯୁଦ୍ଧ କରେ ସେ ବିଶେଷ।
ଅଳାୟୁଧ ଶିଖଣ୍ଡୀର ପ୍ରବଳ ସମର
ଲେଖନ୍ତେ ଏ ନ ସରଇ ଯୁଦ୍ଧ ଅଗୋଚର।
ସମର ସ୍ଥାନେ ପ୍ରବେଶ ପାଣ୍ଡବ ଯେ ଭୀମ
କାଳଦଣ୍ଡ ଘେନି ଯେହ୍ନେ ଆକର୍ଷଇ ଯମ।

ବାଆନ ବାଆନ ଭାର ଗଦା ବେନି ହସ୍ତେ
ସର୍ବେ ଅପସରି ଯାନ୍ତି ଭୀମକୁ ଦେଖନ୍ତେ।
ଯେତେକ ଯୋଦ୍ଧା ପଡ଼ନ୍ତି ତାହାର ଆଗରେ
ପଠାନ୍ତି ଯମ ସଦନେ ଗଦା ବିଘାତରେ।
ଭରଦ୍ୱାଜଙ୍କ ନନ୍ଦନ ଦ୍ରୋଣ ମହାରଥି
ତାଙ୍କ ତୁଳେ ଯୁଦ୍ଧ କଲେ ଦ୍ରୁପଦ ନୃପତି।
ଧୃଷ୍ଟଦ୍ୟୁମନ ସମର ଅଶ୍ୱଥାମା ତୁଳେ
ସମର ସମ୍ଭର୍ବେ ସେହି ପୃଥ୍ୱୀ କମ୍ପାଇଲେ।
ଭୀଷ୍ମଙ୍କ ସମର କଥା କେହୁ କହିପାରି
ମୁହୂର୍ତ୍ତକେ ଅର୍ଜ୍ଜୁନକୁ ଶରେଶର ମାରି।
ପଣ୍ଡୁର ପୁତ୍ର ଅର୍ଜ୍ଜୁନ କକ୍ଷା ଜଗଜେଠି
ତାହାଙ୍କ ବାଣେ ଭୀଷ୍ମଙ୍କ ଦେହ ଗଲା ଫୁଟି।
ଅନେକ ସମ୍ଭାରେ ତହିଁ ହୁଅଇ ସମର
ଦିନକର ନାଥ ହେଲେ ଦୁଇ ଯେ ପ୍ରହର।
ମକର ମାସେ ଆଦିତ୍ୟ ମହାତେଜ ଜ୍ୟୋତି
ଅନଳ କିରଣ ଜିଣି ଦିଶେ ଶରକାନ୍ତି।
ଫଳେ ଫଳେ ପରିତାଳ ହୁନ୍ତି ଶର ବେନି
ବରଷାର ଧାରାପରି ବହଇ ବହନି।
ଯୁଦ୍ଧେ ବିମୁଖ ହେଲେଣି ପାର୍ଥ ମହାମତି
ତୂଣୀରୁ ଗାଙ୍ଗେୟ ତହୁଁ କାଢ଼ିଲେ ଶକତି।
ତୂଣୀରୁ କାଢ଼ନ୍ତେ ସେହୁ ଥିଲା ଏକମୂର୍ତ୍ତି
ହସ୍ତରେ ଘେନନ୍ତେ ହେଲା ବିଂଶମୂର୍ତ୍ତି ଶକ୍ତି।
ଧନୁର୍ଗୁଣେ ବସାଇଲେ ନେଇ ଯେତେବେଳେ
ଏକଶତ ମୂରତି ସେ ହେଲା ତେତେବେଳେ।
ଆକର୍ଷଣ ଯେତେବେଳେ କଲେ ଭୀଷ୍ମ ରଥୀ
ସେ ସମୟେ ଶକ୍ତି ହେଲା ସହସ୍ର ମୂରତି।
ଦେବତା ହେଉ ଅଥବା ଅସୁର ଯେ ହେଉ
ଏ ଶକ୍ତି ବିଘାତେ ବର୍ତ୍ତି ନ ପାରିବେ କେହୁ।
ହେ ରାଜା ସେହୁ ସମୟେ ଗଙ୍ଗାଙ୍କ ତନୟ
ତ୍ରିପୁର ଅନ୍ତକ ପ୍ରାୟ ଦିଶେ ତାଙ୍କ କାୟ।
ଯେତେବେଳେ ଛାଡ଼ି ଦେଲେ ଗଲା ସେହିଶକ୍ତି
ସେ ସମୟେ ହୋଇଲା ସେ କୋଟିଏ ମୂରତି
ସହସ୍ର ସୂର୍ଯ୍ୟଉଦେ କିହେଲେ ତେଜଜିଣି
ତେଜରେ ଅନ୍ତର ହେଲେ ଦେବ ଦିନମଣି।
ଦେଖି ଅପସରି ଗଲେ କୌରବ ସଇନି
ବହୁଦୂରେ ଦୁର୍ଯ୍ୟୋଧନ ରହେ ତାଙ୍କୁ ଘେନି।
ପାଣ୍ଡବଙ୍କ ସୈନ୍ୟମାନେ ବେଗେ ଗଲେ ଘୁଞ୍ଚି
ଏକାମାତ୍ରକେ ସେଠାରେ ଅର୍ଜ୍ଜୁନ ରହିଛି।
ଷଡ଼ଯୂଣ ଯାଏ ଭାଜିଗଲେ ବେନିବଳ
ବେନିରଥୀ ନିଶ୍ଚଳରେ ଅଛନ୍ତି କେବଳ।
ଗୋବିନ୍ଦ ବୋଇଲେ ବାବୁ ଶୁଣ ଫାଲଗୁନି
ସଂସାର ଦହନ ଶରବିନ୍ଧେ ଭୀଷ୍ମ ଘେନି।
ଏହିକ୍ଷଣି ଏ ସଂସାର ହୋଇବ ଦହିଯ୍ୟ
କୋଟିଏ କିରଣ ଅଟେ ଯେଉଁ ଶକ୍ତି ତେଜ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
ଆଜର ଯୁଦ୍ଧରେ ପ୍ରାଣ ନ ରହେ କାହାରି।
ଏଥିପାଇଁ ପ୍ରତିଶର ଅଛି କି ହୋ ପାର୍ଥ
ସମସ୍ୟା ନ ଦେଇ ପାର୍ଥ ହୁନ୍ତେ ମୌନବ୍ରତ।
ଅର୍ଜ୍ଜୁନର ମନୋଭାବ ଜାଣି ଦେବରାଜ
ଏହିକ୍ଷଣି ନନ୍ଦିଘୋଷ ହୋଇବ ଦହିଯ୍ୟ।
ହୃଦଗତେ ଚିନ୍ତିଲେ ଯେ ଦେବ ନାରାୟଣ
ଧାଡିକାରେ ପ୍ରବେଶିଲା ଚକ୍ରସୁଦର୍ଶନ।
ଧ୍ୟାନେ ତାକୁ ଆଜ୍ଞା ଦେଲେ ଦେବ ଚକ୍ରପାଣି
ଭୀଷ୍ମଙ୍କର ଶକତିକୁ ପକା ବେଗେ ହାଣି।
ପାର୍ଥକୁ ଗୋଚର ଏହା ନୋହିଲା ଯୁକତେ
ହନୁମାନ ଦେଖିଲା ସେ ନନ୍ଦିଘୋଷ ରଥେ।
ହନୁ ପ୍ରଶଂସେ ପାଣ୍ଡବେ ତୁମ୍ଭେମାନେ ଧନ୍ୟ
ପ୍ରାଣୁ ଅଧିକ ତୁମ୍ଭଙ୍କୁ କଲେ ନାରାୟଣ।
ଅଦୃଶ୍ୟରେ ଚକ୍ର ଗଲା କରି ଶୂନ୍ୟ ଗତି
ଦହିଯ୍ୟ କରିଲା ଯାଇ ଭୀଷ୍ମଙ୍କ ଶକତି।
ଶକତି ନାଶିଣ ଚକ୍ର ହେଲା ଅନ୍ତର୍ଦ୍ଧାନ
ଦେଖିଣ ଭୀଷ୍ମ ଛାଡ଼ିଲେ ହସ୍ତୁଁ ଧନୁ ତୂଣ।
ରଥ ଘୁଞ୍ଚାଇଣ ଯାଇ ଦୁର୍ଯ୍ୟୋଧନ ଭେଟି
ପାଣ୍ଡବେ ଶରଣ ପଶ ଆହେ ଧାର୍ତ୍ତରାଷ୍ଟ୍ରି।
ଯଦ୍ୟପି ଯାଇ ଶରଣ ନ ପଶ ଅଥବା
ରାଜ୍ୟ ଛାଡ଼ି ପଳାଇ ତୁ ପ୍ରାଣ ରଖ ବାବା।
ଦୁର୍ଯ୍ୟୋଧନ ବୋଲେକିସ କାରଣେ ଏକଥା
କହିଲ ତାହା ବୁଝାଇ କହନ୍ତୁ ସର୍ବଥା।
ଭୀଷ୍ମ ବୋଲେ ଆରେ ଶୁଣ ଶୁଣ ଦୁର୍ଯ୍ୟୋଧନ
ପାଣ୍ଡବଙ୍କୁ ନାଶିବାକୁ କରିଥିଲି ମନ।
ମହାତେଜା ଅନର୍ଯ୍ୟାପ ଶକତି ଧରିଣ
ମନ୍ତ୍ର ସହିତରେ ତାକୁ କଲି ମୁଁ ପ୍ରେରଣ।
ବ୍ରହ୍ମ ରୁଦ୍ର ବରୁଣ ସେ କୁବେର ପବନ
କାହାର ବଳେ ସେ ଶକ୍ତି ନୋହେ ନିବାରଣ।
ପ୍ରଥମେ ଦହନ୍ତା ସେହି ନନ୍ଦିଘୋଷ ରଥ
ଚାରିଅଶ୍ୱ ଧ୍ୱଜେ ହନୁ କୃଷ୍ଣ ଆଉ ପାର୍ଥ।
ଦ୍ୱିତୀୟେ ଦହନ୍ତା ଶକ୍ତି ପାଣ୍ଡବ ସଇନି
ଯୁଧିଷ୍ଠି ଆଦି ଆଜ କି ଯାନ୍ତେ ପ୍ରାଣ ଘେନି।
ଅର୍ଜ୍ଜୁନର ବଳେ ତାହା ନୋହେ ନିବାରଣ
ଚକ୍ର ଧରି ଶ୍ରୀକୃଷ୍ଣ ତା ଛେଦିଲେ ଆପଣ।
ସେହୁ ଯେବେ କି ନିଶ୍ଚୟେ ପଶିଲେ ସମରେ
କିସ ଆଉ ସମର ଯେ ତାହାଙ୍କ ସଙ୍ଗରେ।
ଅନନ୍ତ ବ୍ରହ୍ମାଣ୍ଡେ ଦୈତ୍ୟ ଯେ କଲେ ନିଧନ
ତାହାଙ୍କ ତୁଳେ ସମର କିବା ପ୍ରୟୋଜନ।
ଯା ଶୁଣି ବିସ୍ମୟ ହେଲା ମାନଚକ୍ରବର୍ତ୍ତୀ
ବଳରାମଙ୍କୁ ସ୍ମରଣ କଲାକ ତଡ଼ତି।
ଆସନ କମ୍ପିଲା ଯହୁଁ ଜାଣିଲେ ମୂଷଳୀ
ଧାଡିକାରେ କୁରୁକ୍ଷେତ୍ର ବିଜେ ଦେବ ହଳୀ।

କୌରବେ ପ୍ରଣାମ କଲେ ବଳରାମ ଦେଖି
ସମସ୍ତ ଯୋଦ୍ଧାଏ ଯାନବାହନ ଉପେକ୍ଷି ।
କାମପାଳଙ୍କ ଚରଣେ ସର୍ବେ ପରଣାମି
ତୁମ୍ଭ ଶରଣେ ପାଣ୍ଡବେ ଯୁଦ୍ଧ କଲୁ ସ୍ୱାମୀ ।
ବୋଇଲେ ଶ୍ରୀକୃଷ୍ଣ ତବ ଚରଣକୁ ଛୁଇଁ
ଭାରତ ସମରେ ଅସ୍ତ୍ର ନ ଧରିବି ମୁହିଁ ।
ଗତଜନ୍ମ ଦୋଷ ସେହୁ ଖଣ୍ଡିବା ନିମନ୍ତେ
ସାରଥି ହୋଇଣ ଥିବି ନନ୍ଦିଘୋଷ ରଥେ ।
କହିଥିଲେ ଯୁଦ୍ଧେ ଯେବେ ଶସ୍ତ୍ର ମୁଁ ଧରଇ
ଜନ୍ମେ ଜନ୍ମେ ତୁମ୍ଭ ପାଦେଦ୍ରୋହ ଯେକରଇ ।
ସେହି କଥାମାନ ହରି ସର୍ବେ କଲେ ତେଜ୍ୟା
ଆପଣେ ଚକ୍ର ଧଇଲେ ଯୁଦ୍ଧେ ଦେବରାଜା ।
ତୁମ୍ଭେ ଦେବ ପାଣ୍ଡବଙ୍କୁ ହକାର ଏକ୍ଷଣ
ତାଙ୍କୁ ପଞ୍ଚରାଜ୍ୟ ମୁହିଁ କରିବି ଅର୍ପଣ ।
ସହସେ ପାଣ୍ଡବ ହେଲେ ନାହିଁ ମୋର ଭୀତି
କିପାଇଁ କୃଷ୍ଣଙ୍କ ସଙ୍ଗେ ହୋଇବି ଅପ୍ରୀତି ।
ତୁହି ଗଦାଗୁରୁ ମୋର ଶିରେ ହସ୍ତ ଦେଲୁ
ହେ କାମପାଳ ସମୟେ ରଖି ନ ପାରିଲୁ ।
କୃଷ୍ଣ ଆଶ୍ରୟେ ମୋ ରାଜ୍ୟ ନେଲେ ପଞ୍ଚଭ୍ରାତ
ତୁମ୍ଭଙ୍କୁ ଆଶ୍ରେକଲି ମୁଁ ହୋଇଲି ଅନାଥ ।
ଏପରି କହି ଶୁତିଲେ ତହିଁ ଗଡ଼ଘାଲି
ଶିରେ ହସ୍ତେଦେଇ ସର୍ବେ ତ୍ରାହି ତ୍ରାହିବୋଲି ।
କୌରବଙ୍କର ଅବସ୍ଥା ବଳରାମ ଦେଖି
ରକତ କୁମୁଦ ପ୍ରାୟେ କଲେ ବେନି ଆଖି ।
ଡ଼ାହାଣେ ମୂଷଳ ବାମେ ବଜ୍ରର ଲାଙ୍ଗଳ
ଯୋଗେଶ୍ୱର କାଦମ୍ବରୀ ପାନେ ମତିଭୋଳ ।
ମେରୁ ତୁଲ୍ୟ ଶୋଭାପାଏ ଶିରେ ସପ୍ତଫେଣି
କୋପେଣ ଗର୍ଜ୍ଜନ୍ତି ମେଘନାଦ ପ୍ରାୟେ ଜାଣି ।
ଭୟରେ ସ୍ୱର୍ଗ ତେଜିଣ ଗଲେ ବୃନ୍ଦାରକେ
କୋପେ ଦେଖି କଉରବେ ରହିଲେ ନିଃଶଙ୍କେ
କାଳଚକ୍ର ପ୍ରାୟେ ବୁଲେ ତାଙ୍କ ବେନିଡ଼ୋଳ
ଆପଣେ ସଂଗ୍ରାମେ ବିଜେ ଦେବ କାମପାଳ ।
ମହାପ୍ରତାପେ ଡ଼ାକନ୍ତି ସ୍ୱାମୀ ବଳଦେବ
ଆରେ ଆରେ କୃଷ୍ଣଆରେ ଆରେରେପାଣ୍ଡବ ।
ଯେସନେ ନିର୍ଘାତ ଖସି ପଡ଼ଇ ଆକାଶୁ
ତେହ୍ନେ ପୃଥିବୀ କମ୍ପିଲା ବଳଦେବ ଆସୁଁ ।
ରଥଧ୍ୱଜ ପରେ ଥାଇ ହନୁ ଯେ ଡ଼ାକିଲେ
ସମ୍ଭାଳ ହୋପାର୍ଥ କୋପେ ରାମବିଜେକଲେ ।
ଗୋବିନ୍ଦ ଦେଖିଲେ ନନ୍ଦିଘୋଷ ରଥେ ଥାଇ
ହଳ ମୂଷଳ ବୁଲାଇ ରାମ ଛନ୍ତି ଧାଇଁ ।
ଗୋବିନ୍ଦଙ୍କ ମୁଖ ଚାହିଁ ବୋଲେ ବୃକୋଦର
କିସ ଅର୍ଥେ ପଶିଲେକ ଯୁଦ୍ଧେ ନୀଳାମ୍ବର ।
ଗଦା ବୁଲାଇଣ କୋପେ କାଳଦଣ୍ଡ ପାଣି
ଗର୍ଜ୍ଜେ ଭୀମ ଯେହ୍ନେ ସିଂହ ପରାକ୍ରମ ଜାଣି ।

ରାମଙ୍କ କୋପେ ଦେଖିଣ କୋପେ ଧନଞ୍ଜୟ
ଶତ୍ରୁର ସପକ୍ଷ ଯେହୁ ତାକୁ କିସ ଭୟ ।
ହିଡ଼ିମ୍ବିକ ସୁତ ଘଟୋତ୍କଚ ମହାବଳୀ
ଧାମଇଁ କୋପେ ଅସୁର ଶାଳ ଶିଳ ତୋଳି ।
ରଥ ଉପରୁ ଡ଼େଇଁଣ ବେଗେ ଜଗନ୍ନାଥ
ଭୀମସେନେ କୋଳାଗ୍ରତ କଲେକ ତୁରିତ ।
ଆରେଭୀମ ବଳଦେବେ କୋପ ତୁ ନକର
ତାହାଙ୍କ ସହିତ ଯୁଦ୍ଧ ନୁହଁଇ ବେଭାର ।
ମୋହର ଶପଥ ତୁହି ସମରେ ନ ବଢ଼
ଯାନ ବାହନ ତେଜିଣ ସର୍ବେ ଶସ୍ତ୍ର ଛାଡ଼ ।
କୋଟିଏ ସିଂହର ଅଟେ ଯାର ପରାକ୍ରମ
ତାହାଙ୍କୁ ତୁଲେ ଆମ୍ଭର କିସ ଯେ ସଂଗ୍ରାମ ।
ଦ୍ୱନ୍ଦ୍ୱେ ପ୍ରୟୋଜନ ନାହିଁ ତାହାଙ୍କର ତୁଲେ
ହସ୍ତିନା ତାଡ଼ିଲେ ଯେହୁ କୋପରେ ଲାଙ୍ଗଳେ ।
ଯେଉଁ ଦେବ ରଙ୍ଗାଅବତାରେ କୁତୁହଳୀ
ଜଗନ୍ନାଥ ନାଥ ସେହୁ ରାମ ବନମାଳୀ ।
ଜଗତଜନ ସୋଦର ସବୁଙ୍କୁ ବୋଧିଲେ
ତାଙ୍କ ବଚନେ ସେମାନେ ଶାନ୍ତିକୁ ଲଭିଲେ ।
ଭୀମାର୍ଜ୍ଜୁନ ଆଦି ସର୍ବେ ଛାଡ଼ିଲେକ ଶର
ଶସ୍ତ୍ରହୀନେ ପ୍ରଣମିଲେ ରାମଙ୍କ ପୟର ।
ନାରାୟଣ ପାଣ୍ଡବଙ୍କୁ ଘେନି ପୁଣି ପୁଣି
ନିଉଛାଳି କରି ବହୁ କଲେକ ଦଇନୀ ।
କୃଷ୍ଣେ ବଳରାମ ଦେଖି ରାଗାନ୍ୱିତ ହୋଇ
କିଛି ନ କହି ରହିଲେ ଆୟୁଧ ବୁଲାଇ ।
ପୁଣି ତାଙ୍କ ପାଦେ ହରି ହୋଇ ନଉଛାଳି
ବିନୟ ଭାବେ ପୁଚ୍ଛିଲେ ଦେବ ବନମାଳୀ ।
ହେ ଅନନ୍ତ ଯୋଗେଶ୍ୱର ଦେବ ହଳଧର
ଆକାରଣେ କିପାଁ ପ୍ରଭୁ ଏଡ଼େ କୋପ କର ।
ଭକତବତ୍ସଳ ତୁମ୍ଭେ ହୁଅ ଶାନ୍ତମୂର୍ତ୍ତି
ଦୋଷ ଅନୁରୂପେ ଦେବ ବୁଝି ଦିଅ ଶାସ୍ତି ।
ବୋଲନ୍ତି ଯେ କାମପାଳ ଶୁଣ ଚକ୍ରଧର
କୌରବଙ୍କ ସଙ୍ଗେ କିପାଁ କଲୁ ତୁ ସମର ।
ଆଜର ଯୁଦ୍ଧେ ବଧିବି ମୁହିଁ ପାଣ୍ଡବନ୍ତ
କୌରବଙ୍କ ଫେଡ଼ିବି ମୁଁ ସମସ୍ତ ଦୂରିତ ।
ଦ୍ୱାରକାରେ ନିୟମ ତୁ କଲୁ ପାଦଛୁଇଁ
ବୋଇଲୁ ସଂଗ୍ରାମେ ଶସ୍ତ୍ର ନ ଧରିବି ମୁହିଁ ।
ଆଜି ସମର ତୁ କଲୁ କିପାଁ ଶସ୍ତ୍ର ଧରି
ଭୀଷ୍ମଙ୍କ ଅସ୍ତ୍ର ନାଶିଲୁ ଦେବ ମଧୁହାରୀ ।
ଭୀଷ୍ମଙ୍କୁ ବିନ୍ଧିଲୁ ଶର ପାଣ୍ଡବେ ଆବୋରି
କହ ଦେଖି କୃଷ୍ଣଚନ୍ଦ୍ର କଲୁ ତୁ କିପରି ।
ଶ୍ରୀକୃଷ୍ଣ ବୋଲନ୍ତି ଦେବ ବୁଝି କୋପକର
ମୁହିଁ ତ ଭୀଷ୍ମଙ୍କ ତୁଲେ ନ କଲି ସମର ।
ତୁମ୍ଭେ ଅକାରଣେ ଦେବ କୋପ ନ କରିବା
ଦ୍ରୋଣ କର୍ଣ୍ଣ ଆଦି ଛନ୍ତି ପଚାରି ବୁଝିବା ।

ଦ୍ୱାରକାପୁରେ ନିୟମ କରିଥିଲି ଯାହା
ତାହାଲଙ୍ଘିଥିଲେ ଦେବ ହୋଇବି ଦୋରେହା ।
ପାଣ୍ଡବଙ୍କୁ କୋପ ଦେବ ତୁମ୍ଭର କି ଅର୍ଥେ
ବଜ୍ର ମୂଷଳେ ଛେଦନ କର ଦେବ ମୋତେ ।
ଏତେ ବୋଲି କଲେ ରାମ ଚରଣେ ଦଇନୀ
ପୁଚ୍ଛିବା ପାଇଁକି ଗଲେ ତହୁଁ ହଳପାଣି ।
ଦ୍ରୋଣ ବିଜେ କରିଛନ୍ତି ରଥର ଉପରେ
କାମପାଳ ପଚାରିଲେ ତାହାଙ୍କୁ ସତ୍ୱରେ ।
ଆହେଦ୍ରୋଣ ଭୀଷ୍ମ ତୁଲେ ଯୁଝିଲେ କିହରି
ଏହା ଦେଖିଥିଲେ ତୁମ୍ଭେ କହ ସତ୍ୟକରି ।
ବଳରାମଙ୍କ ଅଗ୍ରତେ କହିଲେକ ଦ୍ରୋଣ
ମୁହିଁ ଦେଖିନାହିଁ ଯୁଦ୍ଧ କଲେ ନାରାୟଣ ।
କର୍ଣ୍ଣକୁ ପୁଚ୍ଛିଲେ ତୁମ୍ଭେ ଥିଲ ଆଗୁଆଣି
ଦେଖିଲ କି ହୋ ସମର କଲେ ଚକ୍ରପାଣି ।
କର୍ଣ୍ଣ ବୋଇଲା କେସନେ ମିଥ୍ୟା କହିବଇଁ
ଶ୍ରୀକୃଷ୍ଣଙ୍କ ହସ୍ତରେ ଶସ୍ତ୍ର ମୁହିଁ ଦେଖିନାହିଁ ।
କୃପ ଅଶ୍ୱଥାମା ଏହି ଦୁହିଙ୍କୁ ପୁଚ୍ଛିଲେ
ଶଲ୍ୟ ଆଉ ଭୂରିଶ୍ରବା ଯାଙ୍କୁ ପଚାରିଲେ ।
ବଳରାମଙ୍କ ଅଗ୍ରତେ କହିଲେ ସମସ୍ତେ
ଅସ୍ତ୍ର କେହି ନ ଦେଖିଲୁ ବାସୁଦେବ ହସ୍ତେ ।
ଦୁର୍ଯ୍ୟୋଧନଙ୍କୁ ପୁଚ୍ଛନ୍ତି ଦେବ ବଳରାମ
ତୁହି କି ଦେଖିଲୁ କୃଷ୍ଣ କରିଲେ ସଂଗ୍ରାମ ।
ବଳରାମଙ୍କୁ କହଇ ଶ୍ରୀ ମାନଗୋବିନ୍ଦ
ମୁଁ ଦେଖିନାହିଁ ଶ୍ରୀକୃଷ୍ଣ କରିବାର ଦ୍ୱନ୍ଦ୍ୱ ।
ଏକ ଦୃଷ୍ଟିରେ ମୁହିଁ ତ ତାଙ୍କୁ ଚାହିଁଥିଲି
ଶସ୍ତ୍ର ଧରିବାର ତାଙ୍କୁ ନେତ୍ରେ ନ ଦେଖିଲି ।
କେବେହେଁ ତ ନାରାୟଣ ସମର ନ କଲା
ମିଥ୍ୟା ନ କହିବି ଦୁର୍ଯ୍ୟୋଧନ ଯେ ବୋଇଲା
ଏ ମହାଭାରତ ଯୁଦ୍ଧେ ମିଥ୍ୟା କେ କହିବ
ଜ୍ଞାନ ଥାଉଁ ନରକକୁ କେ ବାଞ୍ଛା କରିବ ।
ଆହେ ଦେବ ହଳଧର ଦ୍ରୋହ କଲି ତୋତେ
ଭୀଷ୍ମ ରଣ କଲେ ଷଡ଼ ଦିବସ ପର୍ଯ୍ୟନ୍ତେ ।
ଆଜି ଯାଏ କୃଷ୍ଣ ହସ୍ତେ ଶସ୍ତ୍ର ଦେଖି ନାହିଁ
ତୁମ୍ଭ ଆଗେ ଦେବ କେମ୍ନେ ମିଥ୍ୟା କହିବଇଁ ।
ଶୁଣିଣ ବିସ୍ମୟ ହେଲେ ଦେବ ହଳଧାରୀ
ଭୀଷ୍ମଙ୍କୁ ପୁଚ୍ଛିଲେ ଶସ୍ତ୍ର ଧଇଲେ କି ହରି ।
ଭୀଷ୍ମ ବୋଇଲେକ ତୁମ୍ଭେ ବିହନ୍ତା ବିଧାତା
ତୁମ୍ଭର ଛାମୁରେ ଦେବ କେ କହିବ ମିଥ୍ୟା ।
ଅମୋଘ ଶକତି ମୁହିଁ ଆକର୍ଷି ବିନ୍ଧିଲି
କୃଷ୍ଣ ଯୁଦ୍ଧ କରିବାର ନେତ୍ରେ ନ ଦେଖିଲି ।
ଭୋ ରାମ ଯେବଣ ଶକ୍ତି ମାଇଲି ପାର୍ଥକୁ
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ନୁହେଁ ତାହା ନାଶିବାକୁ ।
ଚକ୍ର ଛଡ଼ା ସେ ଶକ୍ତିର ନୁହଇ ବିନାଶ
ତାହା ଶୁଣି ବୋଲୁଛନ୍ତି କମଳାବିଳାସ ।
ଅର୍ଜ୍ଜୁନ କି ମୋର ଅସ୍ତ୍ର ବେଭାର ନ କରେ
ନିଜେ ଦେଖିଛ ସୁଭଦ୍ରା ହରଣ କାଳରେ ।
ଏବେ ତ ପ୍ରତ୍ୟକ୍ଷେ ସବୁ ବୁଝିଲ ଆପଣ
ଅସ୍ତ୍ର ଶସ୍ତ୍ର ଧରି ମୁହିଁ କରିବାର ରଣ ।
ଏହା ଶୁଣି ବଳଦେବ କୋପରେ ପ୍ରଜ୍ୱଳି
ଭୀଷ୍ମଙ୍କ ମୁଖକୁ ଚାହିଁ କୋପିଲେ ମୂଷଳୀ ।
ରାଗେ ଥରଥର ଉର୍ଦ୍ଧ୍ୱେ ବହଇ ନିଃଶ୍ୱାସ
ଆକର୍ଷି ଧଇଲେ ରାମ ଭୀଷ୍ମଙ୍କର କେଶ ।
ରୋଷେ ବୁଲାଇ ପିଟନ୍ତେ ନେଇ ବଜ୍ର ହଳ
ଧାଇଁଯାଇ ଗୋବିନ୍ଦ ଯେ ତାଙ୍କୁ କଲେ କୋଳ ।
ପ୍ରଭୋ ତ୍ରୈଲୋକ୍ୟ ଠାକୁର ପୃଥ୍ୱୀ ଶିରୋମଣି
ଭୀଷ୍ମଙ୍କୁ ବୃଥାରେ କିପାଁ କୋପ କର ସ୍ୱାମି ।
ଦେଖୁଛ ଏ ଅଯାତ୍ରିକ ଅପୁତ୍ରିକ ପାପୀ
ତୁମ୍ଭ ହସ୍ତେ ମଲେ ପାପୁଁ ତରିବ ଅଦ୍ୟାପି ।
ଏ ଛାରକୁ କୋପ କିପାଁ କର କାମପାଳ
ଆପଣେ ଶ୍ରୀକରେ ହରି ଛଡ଼ାଇଲେ ବାଳ ।
ଦୁର୍ଯ୍ୟୋଧନ ସତ୍ୟ କଲା ତୁମ୍ଭର ପାଖରେ
ଶସ୍ତ୍ର ଧରି ନାହିଁ ମୁହିଁ ଭାରତ ସମରେ ।
ତୁମ୍ଭ ପାଦ ଛୁଇଁ ମୁହିଁ ସତ୍ୟ କରିଥିଲି
ଭାରତ ସମରେ ଅସ୍ତ୍ର ନ ଧରିବି ବୋଲି ।
ସତ୍ୟ କେବେ ଲଙ୍ଘିନାହିଁ କହୁଛି ତୁମ୍ଭଙ୍କୁ
ରାମଙ୍କୁ ପ୍ରବୋଧି ନେଲେ ଛଡ଼ାଇ ଭୀଷ୍ମଙ୍କୁ ।
ଭୀଷ୍ମଙ୍କୁ ତେଜ୍ୟା କରିଣ ରାମକୃଷ୍ଣ ବେନି
ଚଳିଲେ ସଙ୍ଗରେ ଘେନି ଭୀମ ଫାଲଗୁନି ।
ମାନଗୋବିନ୍ଦ ଅଗ୍ରତେ ବୋଲନ୍ତି ଯେ ହଳୀ
ଏକଇ ସୋଦର ତୁମ୍ଭେ ନ କର ଯେ କଳି ।
ଅକାରଣେ କି ନିମନ୍ତେ କର ରଣଯାଗ
ରଣ ତ୍ୟାଗକରି ଦିଅ ଯୁଧିଷ୍ଠିର ଭାଗ ।
ତୁ ପଞ୍ଚ କଟକେ ଲକ୍ଷ ଯୋଜନେ ନୃପତି
କାହିଁପାଇଁ ସମରରେ ବଳାଉଛୁ ମତି ।
ଆସ ଦୁଇଜଣଙ୍କୁ ମୁଁ ମିଳାଇଣ ଦେବି
ପଡ଼ା ଦୁଇଖଣ୍ଡ ଦେଇ ପାଣ୍ଡବେ ତୋଷିବି ।
ବଳରାମଙ୍କ ବଚନେ ବୋଲେ ଦୁର୍ଯ୍ୟୋଧନ
ତୋ ବାହାକୁ ଆଶ୍ରା କରି ଆରମ୍ଭିଲି ରଣ ।
ମଧ୍ୟସ୍ଥ ହେବା ପାଇଁକି ସ୍ମରିଲି କି ତୋତେ
ଏଡ଼େ ହୀନବୀର୍ଯ୍ୟ ବୋଲି ମଣିଲୁ କି ମୋତେ ।
ବେଳହୁଁ ନାସ୍ତି କରିଛି ମୁହିଁ ଯେଉଁ କଥା
ତୁମ୍ଭର ବଚନେ ମୁଁ ନ କରଇ ସର୍ବଥା ।
ଏହା କହି ଶଙ୍ଖଶବ୍ଦ କରିଣ ଲେଉଟି
ହସ୍ତିନାପୁରେ ବିଜୟ ରାଜା ଧାର୍ତ୍ତରାଷ୍ଟ୍ରି ।
କୃଷ୍ଣ ବଳରାମ ଆଉ ବୀର ଧନଞ୍ଜୟ
ଇନ୍ଦ୍ର ପ୍ରଶସ୍ତେ ଯାଇଣ କରିଲେ ବିଜୟ ।
ବଳରାମ ବୋଇଲେକ ଶୁଣ ତୁ ଅଚ୍ୟୁତ
ଏ ମହାଭାରତ ତୁହି କର ସମାପତ ।

ପାଣ୍ଡବଙ୍କୁ ରକ୍ଷା କଲୁ ତୋହର ବୁଦ୍ଧିରେ
ନିଶ୍ଚୟ ନାଶ ହୋଇବେ କୌରବେ ସମରେ ।
ଭୀଷ୍ମେ ଆଜ ଯେଉଁ ଶର କଲାକ ପ୍ରେରଣ
ତୋହ ବିନା ତାକୁ କିଏ କରନ୍ତା ବାରଣ ।
ପାଣ୍ଡବମାନଙ୍କୁ କଷ୍ଟ ପଡ଼ିବ ଯେ ବେଳେ
ଶସ୍ତ୍ର ଧରି ନିବାରିବୁ ତୁହି ତେତେବେଳେ ।
ଦେବଅସ୍ତ୍ରକୁ ବିନ୍ଧିବେ ଭୀଷ୍ମ ଆଉ ଦ୍ରୋଣ
ଅଦୃଶ୍ୟେ ଚକ୍ରେ ଛେଦିବୁ ତୁ ତାହା ଆପଣ ।
ସଂକଟେ ସ୍ମରିବ ମୋତେ ସେ ମାନଗୋବିନ୍ଦ
ତୋହର ମୋହର ହେବ ଅକାରଣେ ଦ୍ୱନ୍ଦ୍ୱ ।
ସମସ୍ତ ସମ୍ଭାର ମୁହିଁ ସମର୍ପିଲି ତୋତେ
ତୀର୍ଥେ ମୁଁ ଯାଉଛି ଯୁଦ୍ଧଶେଷ ପରିଯନ୍ତେ ।
ଏପରି କୃଷ୍ଣଙ୍କୁ କହି ରେବତୀରମଣ
ସର୍ବ ତେଜ୍ୟାକରି ଗଲେ ପ୍ରୟାଗ ତୀର୍ଥେଣ ।
ଜୟ ଜୟ କାମପାଳ ରେବତୀରମଣ
ଦେବତାମାନେ ବନ୍ଦନ୍ତି ଯାହାର ଚରଣ ।
ପରମାନନ୍ଦ ପୁରୁଷ ତାହାଙ୍କ ବିହାରୀ
ଦୃଷ୍ଟି ଦ୍ୱିବିନ୍ଦ ବାନର ଲାଙ୍ଗଳେ ନିବାରି ।
ଅମ୍ବା ପ୍ରଲମ୍ବା କଦମ୍ବା ଯେଉଁ ବୀର ତିନି
ଯାଙ୍କୁ ସଂହରି ଉଦ୍ଧରିଅଛୁ ତୁ ମେଦିନୀ ।
ସ୍ଫଟିକ ମଉଳି ପରେ ସପ୍ତଫଣି ସ୍ଥିତ
ପବନାଘାତେ ସେମାନେ କରୁଥାନ୍ତି ନୃତ୍ୟ ।
ଦକ୍ଷିଣେ ଲଙ୍ଗଳ ବାମେ ସୌନନ୍ଦ ମୂଷଳ
କାନ୍ଦମ୍ବରୀ ପାନେ ସଦା ତୋର ମତି ଭୋଳ ।
ବିରାଜନ୍ତି ଚନ୍ଦ୍ରଚୂଡ଼ ମୁକୁଟ କୁଣ୍ଡଳ
କ୍ଷଷ୍ଠଦଶ ଲୋଚନରେ ବିରାଜେ ଉଲ୍ଲୋଳ ।
ଲୋକେଶ୍ୱର ତୁହି ଯେ ଅଜପାମନ୍ତ୍ରେ ସିଦ୍ଧି
ଅଦଭୁତେ ମାତ୍ରା ମୁଦ୍ରାସବୁ ପାରୁ ରୁନ୍ଧି ।
ପରମାନନ୍ଦ ପୁରୁଷ ସାଧିଲୁ ଉଜାଣି
ଟେକିଣ ଛନ୍ଦିଲ ଅଙ୍କ ନାଭିମେଳେ ଆଣି ।
କାମିନୀ କର୍ନ୍ଦପନାଥ ଅଭୟ ମେଖଳା
ପ୍ରଳୟ ଉଦ୍ଧାର ନାଥ ପ୍ରସନ୍ନ ଧବଳା ।
ଯୋଗେଶ୍ୱର ପୁରୁଷ ତୁ ସର୍ବଜନ ଚିନ୍ତା
କର୍ତ୍ତବ୍ୟ କର୍ମରେ ନାଥ ମହାବଳବନ୍ତା ।
କୋଟିଏ ମହାତୀର୍ଥର ଯେଉଁ ସ୍ୱାମୀ ମୂଳ
କୋଟି ତୀର୍ଥେଣ ପୁଷ୍କରଯୁକ୍ତ ପାଦତଳ ।
ମୁହିଁ ମାନବ ମୋହର କିସ ଯେ ଭରସା
ବଳରାମ ଚରଣକୁ ନିତି ମୋର ଆଶା ।
ରୋହିଣୀସୁତ ଚରଣେ ସର୍ବଦା ମୁଁ ସେବି
ଶୂଦ୍ର ଶାରଳାଦାସ ଯେଏଥେ କହେଭାବି ।

☆ ☆ ☆

## ଭୀଷ୍ମ ଓ ଅର୍ଜ୍ଜୁନଙ୍କ ସପ୍ତମ ଦିନ ଯୁଦ୍ଧ

ଏଥୁଅନ୍ତେ ଜନେ ଶୁଣ ଭାରତ କାହାଣୀ
ଅଗସ୍ତିଙ୍କ ପାଶେ ବସିଥିଲେ ନୃପମଣି ।
ବ୍ରହ୍ମବେତ୍ତା ଯୋଗେଶ୍ୱର ମୁନିଙ୍କୁ ଅନାଇ
ବୈବସ୍ୱତ ପଚାରନ୍ତି ହୋଇଣ ବିନୟୀ ।
ଷଷ୍ଠ ଦିବସର ଅନ୍ତେ ହୋଇଲା ଯେ କଥା
କୃପାକରି ମୁନିବର କହ ସେ ବାରତା ।
ରାଜାର ଭକତି ଦେଖି କହନ୍ତି ଅଗସ୍ତି
ଏଥୁଅନ୍ତେ ଯାହା ହେଲା ଶୁଣ ନରପତି ।
ଯହୁଁ ବଳରାମ କଲେ ପ୍ରୟାଗକୁ ବିଜେ
ପାଣ୍ଡବ ଘେନି ଜୟନ୍ତା ବିଜେ ଦେବରାଜେ ।
ସ୍ନାନ ନିତ୍ୟକର୍ମ ଆଦି ସାରିଲେ ମଣୋହି
ସର୍ବଯୋଦ୍ଧା ଭୀଷ୍ମ କଥା ହୁଅନ୍ତି କୁହାକୁହି ।
ତିମିର ବିଦାରି ଉଦେ ହେଲେ ଦିନମଣି
ପ୍ରଭାତେ ମାନଗୋବିନ୍ଦ ଥାଟକୁ ପଳାଣି ।
ଭୀଷ୍ମଙ୍କୁ ମୁକୁଟ ଦେଇ କଲେ ସେନାପତି
କର୍ଣ୍ଣ ଦ୍ରୋଣ କୃପ ଶଲ୍ୟ ସାଜିଲେକ ହାତୀ ।
ଅନେକ ନିଶାଣ ଉଡ଼େ ଟମକ ଯେ ବାଜେ
ସମଦଣ୍ଡ ସାଜି ମାନଗୋବିନ୍ଦ ଯେ ବିଜେ ।
ସମୁଦ୍ର ମନ୍ଥନେ ଯେହ୍ନେ ଯାନ୍ତି ବୃନ୍ଦାରକେ
ତେହ୍ନେପ୍ରବେଶ ହୋଇଲେ ଯୁଦ୍ଧେ ଏକେଏକେ ।
ନନ୍ଦିଘୋଷ ରଥେ ବିଜେ କଲେ ବନମାଳୀ
ଅର୍ଜ୍ଜୁନକୁ ଘେନି ଦେବ ସମରରେ ମିଳି ।
ଶ୍ୱେତ ହସ୍ତୀରେ ଆରୋହି ବିଜେ ଧର୍ମସୁତ
ଉଭାରିଲେ ଅଧୋମୁଖ ହୋଇ ଗଜଯୂଥ ।
ଅଜଗବ ଧନୁ ଧରି ବିଜେ ଗଙ୍ଗାସୁତ
ରଥ ଆରୋହିଣ ଯାଇ ଭେଟିଲେକ ପାର୍ଥ ।
ଗୁଣଘୋଷ ଶବଦରେ କମ୍ପେ ଭୂମିଦେବୀ
ବାଜଇ ଯେ ବିଜିଘୋଷ ଦାଉଣ୍ଡି ଦୁନ୍ଦୁଭି ।
ଗଜ ଧାମନ୍ତେ ଯୋଦ୍ଧାଏ ଶୂନ୍ୟେ ଉଡ଼େଧୂଳି
ଆକାଶେ ଅଦୃଶ୍ୟ ହେଲେ ଦେବ ଅଂଶୁମାଳି ।
ଶୁଣ ଆହୋ ମହାରାଜା ଭୀଷ୍ମଙ୍କ ମହିମା
ବିଶ୍ୱାବସୁଙ୍କ ସଦୃଶେ ଯାହାଙ୍କ ଗାରିମା ।
ଅଜଗବ ଧନୁ ଯାର ହସ୍ତେ ଶୋଭାବନ
ଟାଣି ପାର୍ଥଙ୍କୁ ବିନ୍ଧନ୍ତି ତୀକ୍ଷଣ ଶରମାନ ।
ଲୋହିତାକ୍ଷ ଶର ଆଉ ଶର ତୀକ୍ଷ୍ଣ ମୁନା
ଆକର୍ଷି ବିନ୍ଧିଲେ ଭୀଷ୍ମ ଅର୍ଜ୍ଜୁନର ସେହ୍ନା ।
ପୁଣି ପଞ୍ଚବିଂଶ ବକ୍ରମୁନା ବାଣ ଘେନି
ପାର୍ଥ ଉପରକୁ ତାହା ବିନ୍ଧିଲେକ ଟାଣି ।
ପୁନରପି ପାଞ୍ଚଶତ ପୁରାଇଣ ଶର
ଭୀଷ୍ମ ବିନ୍ଧନ୍ତେ ଦେଖିଲେ ତାହା ଚକ୍ରଧର ।
ପୁଣ ପୁଣ ଗାଙ୍ଗେୟ ଯେ ବିନ୍ଧି ତୀକ୍ଷ୍ଣଶର
ବିଶାଶଏ ଶର ବିନ୍ଧି ଅଶ୍ୱଙ୍କ ଉପର ।
ଆସନ୍ତି ନାରାଚମାନ ଶୂନ୍ୟପୁର ଘୋଟି
ପଞ୍ଚଷଠି ଶରେ ତାହା ଛେଦିଲେ କିରୀଟି ।

ଭୀଷ୍ମଙ୍କର ବାଣମାନ ଛେଦି ସବ୍ୟସାଚୀ
ପୁନରପି ଧନଞ୍ଜୟ ଗାଣ୍ଡୀବ ଆମଞ୍ଚି ।
ପୃଥ୍ୱୀ ଟଳମଳ ହେଲା ଧନୁଗୁଣ ଘୋଷେ
ବୃନ୍ଦାରକଗଣେ ଦେଖି ତ୍ରାସିଲେ ଆକାଶେ ।
କୁଠାର ଆୟୁଧ ପୁଣି ଗାଙ୍ଗେୟ ବିନ୍ଧିଲେ
କୋଦାଳ ଶରରେ ପାର୍ଥ ତାହାକୁ ଛେଦିଲେ ।
ପୁଣି ଗାଙ୍ଗେୟ ସହସ୍ରେ ଶର କରେ ଧରି
ଅର୍ଜ୍ଜୁନକୁ ବିନ୍ଧିଲେ ତା ଅତି କୋପକରି ।
କଙ୍କପକ୍ଷ ପରିଘାଦି ଶର ତୀକ୍ଷ୍ଣମୁନା
ପାର୍ଥ ବିନ୍ଧନ୍ତେ ଭେଦିଲା ଭୀଷ୍ମଙ୍କର ସେହ୍ନା ।
ଦେଖନ୍ତେ ଅର୍ଜ୍ଜୁନ ଶର ଶାନ୍ତନୁ ନନ୍ଦନ
ପୁନଶ୍ଚ ଶତେ ନାରାଚ ବିନ୍ଧିଲେ ଅର୍ଜ୍ଜୁନ ।
ଅନର୍ଯ୍ୟାପ ଶର ତହୁଁ ବିନ୍ଧନ୍ତେ ଗାଙ୍ଗେୟ
ଅର୍ଜ୍ଜୁନ ନାରାଚେ ତାହା ବ୍ୟର୍ଥ ସମୁଦାୟ ।
ପରିଘ ନାରାଚ ଘେନି ଭୀଷ୍ମ ମହାରଥୀ
ଅରଜୁନ ଉପରକୁ ବିନ୍ଧିଲେ ଝଟତି ।
କୌମୋଦକୀ ଗଦା ଶର ଘେନି ଫାଲଗୁନି
ଭୀଷ୍ମଙ୍କ ଉପରେ ତାହା ବିନ୍ଧିଲେକ ଟାଣି ।
ଗଙ୍ଗାଙ୍କ ନନ୍ଦନ ତାହା ଦୂରରୁ ଦେଖିଲେ
କାମ୍ୟକ ପଞ୍ଚଶରରେ ତାହାକୁ ଛେଦିଲେ ।
ସମରେ ମିଳିଲେ ଆସି ଶିଖଣ୍ଡୀ କୁମାର
ଅଶ୍ୱତ୍ଥାମା ସହିତରେ କରିଲେ ସମର ।
ବିଶାଶତେ ନାରାଚକୁ ବିନ୍ଧି ଅଶ୍ୱତ୍ଥାମା
ଦୁଇବଳଙ୍କୁ ଘୋଟିଲା ଭାରତର ବ୍ରହ୍ମା ।
ଚୌବିଂଶ ନାରାଚ ଘେନି ଦ୍ରୁପଦର ବଳା
ଅଶ୍ୱତ୍ଥାମା ଉପରକୁ କୋପରେ ବିନ୍ଧିଲା ।
ପୁଣ ଚଉଷଠି ଶର ଧନୁରେ ପୂରାଇ
ଶିଖଣ୍ଡୀକୁ ଅଶ୍ୱତ୍ଥାମା ବିନ୍ଧିଲା ନିଠାଇ ।
ଶିଖଣ୍ଡୀ ବିନ୍ଧିଲା କୋପେ ପାଶୁପତ ବାଣ
ନିଦାଘ କାଳରେ ଯେହ୍ନେ ଆଦିତ୍ୟ କିରଣ ।
ଦ୍ରୋଣଙ୍କ ନନ୍ଦନ ତାହା ଦେଖିଲେକ ଦୂରେ
ଛେଦିଲେ ତାହା ନିଦାଘ ବାଣ ଅନଳରେ ।
ବେନିଶର ହୋଇଲାକ ମଧ୍ୟେ ପଡ଼ିତାଳ
ଉଠିଲେକ ବହ୍ନି ତହୁଁ ଗଗନ ମଣ୍ଡଳ ।
ପୁଣି ପର୍ବତ ଶରକୁ ଘେନି ଅଶ୍ୱତ୍ଥାମା
ବିନ୍ଧନ୍ତେ ଆକାଶେ ତ୍ରାସକଲେ ବେଦବ୍ରହ୍ମା ।
ପର୍ବତମାନେ ଆସନ୍ତି ହୋଇଣ ପ୍ରଚଣ୍ଡ
ଭାଜିଲେ ପାଣ୍ଡବ ବଳ ଘୋଟିଲା ବ୍ରହ୍ମାଣ୍ଡ ।
ରଥ ଗଜ ଅଶ୍ୱ ପରେ ପଡ଼ି କରେ ଧୂଳି
ଶିଖଣ୍ଡୀ ରଖ ବୋଲିଣ ଶୁଭଇ ବୋବାଳି ।
ଦ୍ରୁପଦର ନନ୍ଦନ ସେ କକ୍ଷା ଜଗଜେଠି
ବଜ୍ରଶର ପେଶିଦେଲା ପରବତ କାଟି ।
ଶିଖଣ୍ଡୀ ପେଷିଲା ଯହୁଁ ପାଶୁପତ ବାଣ
ସମୁଦାୟ ପରବତ ଗଲାକ ଭାଙ୍ଗିଣ ।

ବୀରସୁନ୍ଦର ଶିଖଣ୍ଡୀ ଉଠେ ଗଳଗାଜି
ରଣେ ଯୋଦ୍ଧାମାନେ ତହୁଁ ପଳାଇଲେ ଭାଜି ।
ବେନିବୀରେ ଘୋରତର କରନ୍ତି ସମର
ଅସ୍ତାଚଳେ ପ୍ରବେଶିଲେ ଦେବ ଦିନକର ।
ଅତ୍ୟନ୍ତ ସମର ହେତୁ ହେଲା ମହାବାଧା
ଉଭୟ ସୈନ୍ୟଙ୍କୁ ତହିଁ ଲାଗେ ମହା କ୍ଷୁଧା ।
ବିଜେ କର୍ଣ୍ଣକୁଠାରକୁ ଘେନିଣ ଗାଙ୍ଗେୟ
ଧନୁରେ ବସାଇଲେ ସେ ଶର ମୃତ୍ୟୁଞ୍ଜୟ ।
ସହସ୍ର କୋଟି କିରଣ ତେଜେ ପରକାଶି
ଦିଗପାଳ ଲୋକେ ତାହାଦେଖି ମନେ ତ୍ରାସି ।
ତେଜ ଦେଖିଣ ନୟନ ବୁଜିଲେ ସମସ୍ତ
ରଥେ ଥାଇ ଅର୍ଜ୍ଜୁନର କମ୍ପେ ବେନି ହସ୍ତ ।
ଭୁଜ କମ୍ପମାନ ହେଉ କମ୍ପିଲା ଶରୀର
ନନ୍ଦିଘୋଷ କମ୍ପିଲା ଯେ ଦେଖିଲେ ଶ୍ରୀଧର ।
ନନ୍ଦିଘୋଷ ରଥ ଚକ ଅଚଳ ଅଟଇ
ଉଲ୍‌କାପାତ ହୋଇବାରୁ ପୃଥିବୀ କମ୍ପଇ ।
ବିଜୟ କର୍ଣ୍ଣକୁଠାର ପଡ଼ି ଧାତିକାରେ
ଦଶସହସ୍ର ଯୋଦ୍ଧା ଯେ ନାଶିଲା ସେଠାରେ ।
ରକତରେ କରଦମ ହୋଇଲା ବସୁଧା
ରଣଜୟ କରିଗଲେ ଭୀଷ୍ମ ମହାଯୋଦ୍ଧା ।
ଜୟ ଶଙ୍ଖ ବଜାଇଲେ କୌରବ ସଇନି
ବାହୁଡ଼େ ମାନଗୋବିନ୍ଦ ସର୍ବ ସୈନ୍ୟ ଘେନି ।
ସୈନ୍ୟଙ୍କ ହତ ଦେଖିଣ ଅର୍ଜ୍ଜୁନ ଦୁଃଖିତ
ଶୋକ ଅବସ୍ଥାରେ ସୈନ୍ୟ ହୁଅନ୍ତି ଆରତ ।
ପ୍ରବେଶ ପାଣ୍ଡବ ଯାଇ ଜୟନ୍ତୀ ଭୁବନ
ବିକଳରେ ଫାଲଗୁନି ବିରସ ବଦନ ।
ସ୍ନାନ ଦେବାର୍ଚ୍ଚନ ଆଦି ଷଟକର୍ମ ସାରି
ସାଧୁ ହୋ ଗାଙ୍ଗେୟ ବୋଲି ସମସ୍ତେ ଉଚ୍ଚାରି ।
ଅନେକ ରତ୍ନ ଘେନିଣ ଦୁର୍ଯ୍ୟୋଧନ ରାଜା
ଭୀଷ୍ମଙ୍କ ସନ୍ନିଧେ ରଖି କଲା ପାଦପୂଜା ।
ସଞ୍ଜୟ ବୋଇଲେ ରାଜା ଧୃତରାଷ୍ଟ୍ର ଶୁଣ
ଭୀଷ୍ମ ଆଜି ନାଶିଲେକ ବହୁତ ସଇନ୍ୟ ।
ଜୀବନ ତାହାର ଧନ୍ୟ ଧନ୍ୟ ବୀରପଣ
ଆକାଶରେ ପ୍ରଶଂସନ୍ତି ସୁର ସିଦ୍ଧଗଣ ।
ଭୀଷ୍ମଙ୍କ ପରାୟେ ରାଜା ଥିଲେ ପଞ୍ଚରଥୀ
ନବଦ୍ୱୀପ ଜିଣି ଏହୁ କରନ୍ତେ ନିକ୍ଷତ୍ରୀ ।
ଆଜର ଯୁଦ୍ଧ ଯେ ହେଲା ଦେବେ ଅଗୋଚର
ଉପ୍ରୋଧ ତେଜ୍ୟା କରିଣ କଲେକ ସମର ।
ଯାହା ମୁଁ ଦେଖିଲି ରାଜା ଭୀଷ୍ମ ବୀରରଣ
ନିଶ୍ଚେ ଜାଣିଲି ପାଣ୍ଡବେ ଘଟିବ କଷଣ ।
ଏବେ ପଣ୍ଡୁପୁତ୍ରେ ନାହିଁ ଭୀଷ୍ମଙ୍କର ଦୟା
ପଞ୍ଚରାଜ୍ୟେ ଭୋଗକର ହୋଇଣ ନିର୍ଭୟା ।
ପାଇଲ ହୋ ପଞ୍ଚରାଜ୍ୟ ହୋଇଣ ନିର୍ଭୟ
ଏବେ ସେ ଜାଣିଲି ନାହିଁ ପାଣ୍ଡବଙ୍କ ଜୟ ।

ମନ୍ତ୍ରୀର ବଚନେ ରାଜା ହୋଇଲେକ ତୁଷ୍ଟ
ଭୀଷ୍ମଙ୍କୁ ବହୁ ପ୍ରଶଂସା କଲେ ଧୃତରାଷ୍ଟ୍ର ।
ହେ ମଧୁସୂଦନ ଦୁଷ୍ଟ ନିସୂଦନ କାରୀ
ଛେଦନ ନ କର କିପାଁ ମୋର ପାଞ୍ଚ ଅରି ।
ସେମାନେ ମୋର ମନକୁ ଥୟ ନ କରନ୍ତି
ସର୍ବଦା ନାନା ବିପତ୍ତି କୁପଥେ ନିଅନ୍ତି ।
ତହିଁରୁ କିପରି ମୁହିଁ ପାଇବି ମୁକତ
ଏହି ସଦବୁଦ୍ଧି ଦିଅ ଆହେ ଜଗନ୍ନାଥ ।
ଏତିକି ପ୍ରାର୍ଥନା ତବ ଚରଣ କମଳେ
ଶାରଳାଦାସର ମତି ରହୁ ସୁନିଷ୍ଠଳେ ।

☆ ☆ ☆

## ଭୀଷ୍ମଙ୍କର ଅଷ୍ଟମଦିନ ଯୁଦ୍ଧ ଓ ଅଗ୍ନିଙ୍କଠାରୁ ଶରପ୍ରାପ୍ତି

ଏଥୁଅନନ୍ତରେ ପୁଣି ମନୁ ନରନାଥ
ଅଗସ୍ତିଙ୍କ ଶ୍ରୀଚରଣେ କରି ପ୍ରଣମିତ ।
ପୁଛିଲେ ଅଷ୍ଟମଦିନ ଯୁଦ୍ଧ ସମାଚାର
କୃପାକରି କହ ମୁନି ଘେନି ଭକ୍ତି ମୋର ।
ଶ୍ରୀମହାଭାରତ ଭୀଷ୍ମ ପର୍ବର ଯେ ବାଣୀ
ଶୁଣିଣ ତରିବି ଏହି ଭବତରଙ୍ଗିଣୀ ।
ଅଗସ୍ତି କହିଲେ ଶୁଣ ମନୁ ମହୀପତି
କହିବା ଅଷ୍ଟମଦିନ ଯୁଦ୍ଧ ଯେଉଁ ରୀତି ।
ଏ ସମୟେ ଦିନମଣି ବିଜେ ଉଦେଗିରି
ଦଣ୍ଡ ସାଜ ଦଣ୍ଡ ସାଜ ବାଜଇ ମହୁରୀ ।
କୁରୁପତି ଶ୍ରୀଭୁଜରେ ଅର୍ଘ୍ୟ ଯେ ଘେନିଣ
ଭୀଷ୍ମଙ୍କୁ ପ୍ରଶଂସା କଲେ ବିନୟ ହୋଇଣ ।
ସାଜନ୍ତି କୌରବବଳ ଉନ୍ମତ୍ତ ହୋଇଣ
ଗଣନା କରି ନ ହୁଏ ଅପ୍ରମିତ ସୈନ୍ୟ ।
ପୌଷମାସ କୃଷ୍ଣପକ୍ଷ ପଞ୍ଚମୀର ତିଥି
ଦଣ୍ଡ ଘେନି ଯୁଦ୍ଧେ ବିଜେ ମାନଚକ୍ରବର୍ତ୍ତୀ ।
ନନ୍ଦିଘୋଷ ରଥକୁ ଯେ ସାଜିଲେ ଶ୍ରୀହରି
ରଥରେ ଯୋଚିଲେ ନେଇ ଶ୍ୱେତ ଅଶ୍ୱ ଚାରି ।
ଦେବଦତ୍ତ ଶଙ୍ଖ ଆଉ ପଞ୍ଚଜନ୍ୟ ବାଜେ
ଶୁଭ ଅନୁକୂଳେ ରଣସ୍ଥାନେ କଲେ ବିଜେ ।
ନିଦାଘ ଆଦିତ୍ୟ ଜିଣି ଭୀଷ୍ମଙ୍କର ମୂର୍ତ୍ତି
ଗଗନରେ ବିରାଜଇ ତାହାଙ୍କର ଜ୍ୟୋତି ।
ନଉସସ୍ର ବଳ ଧନୁ ଭୀଷ୍ମଙ୍କର ହସ୍ତେ
ବ୍ରହ୍ମାଣ୍ଡ କମ୍ପୁଛି ଶର ଆମଞ୍ଚୁବା ମାତ୍ରେ ।
ପୃଥ୍ୱୀ ଟଳ ଟଳ ହେଲା ଭୀଷ୍ମ ଗୁଣନାଦେ
ବ୍ରହ୍ମାଣ୍ଡ ପୂରିଲା ସୈନ୍ୟଙ୍କର ମୁଖଶବ୍ଦେ ।
ସହସ୍ର ଶର ଧନୁରେ ଯୋଚିଣ ଗାଙ୍ଗେୟ
କୋପେ ବିନ୍ଧେ ଯହିଁ ଛନ୍ତି ଶ୍ରୀକୃଷ୍ଣ ବିଜୟ ।
ପୁଣି ଗାଙ୍ଗେୟ ସହସ୍ରେ ନାରାଚ ପୂରାଇ
କପିକେତନ ଧ୍ୱଜକୁ ବିନ୍ଧିଲେ ନିଠାଇ ।

ବଦନ୍ତି କେଶବ ତୁମ୍ଭେ ଦେଖ ଫାଲଗୁନି
ଦୁଇସସ୍ର ଶର ଭୀଷ୍ମ ବିନ୍ଧିଲେ ଏକ୍ଷଣି ।
ପୁଣି ଭୀଷ୍ମ ଗୁଣେ ଯୋଚି ଦୁଇଶତ ବାଣ
ହନୁମନ୍ତ ପରେ ତାହା ବିନ୍ଧେ କରି ଟାଣ ।
ହସ୍ତର ବ୍ୟଗ୍ରତା କେହି ଦେଖି ତ ନ ପାରି
ଆକାଶେ ଅଦୃଶ୍ୟ ହେଲେ ଗଗନ ବିହାରୀ ।
ନାରାୟଣଙ୍କ ବଚନେ ପୁଛିଲେ କିରୀଟୀ
ଆଦିତ୍ୟ ଅସ୍ତଗଲେ କି ନିଶା ଆସେ ଘୋଟି ।
ଶୁଣିଣ ଶ୍ରୀହରି ତାଙ୍କୁ ଏ ଉତ୍ତର ଦେଲେ
ସମରେ ବିମୁଖ ପାର୍ଥ ହେଲୁ କି ବୋଇଲେ ।
ଅନର୍ଯ୍ୟାପ ଶରମାନ ଗାଙ୍ଗେୟ ବିନ୍ଧିଲେ
ତେଣୁକରି ସୂର୍ଯ୍ୟଅସ୍ତ ପରାୟେ ଦିଶିଲେ ।
କପିକେତନେ ବିନ୍ଧନ୍ତେ ଶର ସସ୍ର ତିନି
ପ୍ରତିଶରେ ଛେଦିଲେ ତା ବୀର ଫାଲଗୁନି ।
ସାରଥିକି ଚାହିଁ ଲକ୍ଷେ ନାରାଚ ପୂରାଇ
ବିନ୍ଧିଲେ ଅୟୁତେ ବାଣ ପୁଣ ବ୍ୟଗ୍ର ହୋଇ ।
ଅର୍ଜ୍ଜୁନକୁ ପେଷନ୍ତେ ସେ ଶର ଅଇବ୍ରତ
ବାବନ ଶରେ ଛେଦିଲେ ତାହା ବୀରପାର୍ଥ ।
ସମରେ ପଶିଲା ଆସି ବୀର ବୃକୋଦର
ବିଶ୍ୱରୂପ ପ୍ରକାଶିଲା ନୃସିଂହ ପ୍ରକାର ।
ଅଧରେ ଦନ୍ତ ଚାପିଣ ଶୂନ୍ୟେ ଶିର ଲାଗି
ଦେଖିଣ କୌରବ ବଳ ପଳାଇଲେ ଭାଙ୍ଗି ।
ସୌନ୍ୟ ପଳାଅନ୍ତେ ଦୂରୁ ଦେଖିଲା ଶକୁନି
ଭୀମକୁ ଉଗାଳେ ଯାଇ ଲକ୍ଷେଯୋଦ୍ଧା ଘେନି ।
ଭୀମ ଆନନ୍ଦ ହୋଇଲା ଶକୁନିକୁ ଦେଖି
ବକପଲ ଦେଖି ଯେହ୍ନେ ଧାଏଁ ଶ୍ୟେନପକ୍ଷୀ ।
ଗଦା ବୁଲାଇଣ ବେଗେ ଭୀମସେନ ଉଠି
ଶକୁନିର ରଥେ ତାହା ବଜ୍ରସମ ପିଟି ।
ଗଦାର ଆଘାତେ ରଥ ଚୂର୍ଣ୍ଣ ହୋଇଗଲା
ରଥୁଁ ଡ଼େଇଁଣ ଶକୁନି ବେଗେ ପଳାଇଲା ।
ଗଦାକୁ ପିଟିଣ ଭୀମ ଶେଷ କଲା ସୈନ୍ୟ
ପଳାଏ ଶକୁନି ଭୟେ ନିରାଶ ହୋଇଣ ।
ଭୀମସେନ ଡ଼ାକେ ମାମୁଁ କ୍ଷଣେମାତ୍ର ରହ
ହାରିଣ ପଳାଅ କିପାଁ ନ କରି ଉପାୟ ।
ଗାଢ଼େ ଯାଇ ବୃକୋଦର ରଥେ ଗଦା ପିଟି
ଆକର୍ଷିଣ ପିଟନ୍ତେ ସେ ଗଲା ଧୂଳି ଉଠି ।
ଭାଜି ଯୋଦ୍ଧାଙ୍କର ରଥ ହେଉଅଛି ଧୂଳି
ବିକ୍ରମିଣ ଗଦାବର ପିଟୁଅଛି ବଳୀ ।
ରଥ ସାରଥି ଯେ ଚୂନା ହୁନ୍ତି ଏକେ ଏକେ
ଭୟେ ସମର ଉପେକ୍ଷି ପଳାଇଲେ ଥୋକେ ।
କରେ ଧରି ଗଜଦନ୍ତ ବୁଲାଇ ପାବନି
ଗଜଙ୍କ ଉପରେ ପିଟେ ହୋଇ ମହାତମି ।
ବେଳୁବେଳ ଗଜଙ୍କୁ ସେ ବୁଲାଇ ପ୍ରଚଣ୍ଡ
ପିଟନ୍ତେ ସେ ହୋଇ ଯାଉଛନ୍ତି ମସିଗୁଣ୍ଡ ।

ସମର ବିଘାତେ ଦୂରେ ବହଇ ପବନ
ରକତରେ ପୃଥିବୀ ଯେ ହୋଇଲା କର୍ଦ୍ଦମ।
ତାହା ଶୁଣିଣ ଶକୁନି ଆରୋହିଲା ଗଜ
ଧନୁ ଟଙ୍କାରି ଭୀମକୁ ବିନ୍ଧିଲା ନାରାଚ।
ଶର ପଡ଼ନ୍ତେ ପାତିଲା ଭୀମ ବାମଅଙ୍ଗ
ଭୀମ ଅଙ୍ଗେ ପଡ଼ି ଶର ହୋଇଗଲା ଭଙ୍ଗ।
ତହୁଁ ଗଦା ବୁଲାଇଣ ଭୀମ କୋପାନଳେ
ଧାଡିକାରେ ପିଟିଲା ଯେ ହସ୍ତୀ ବକ୍ଷସ୍ଥଳେ।
ଦାରୁଣ ପ୍ରହାରେ ହସ୍ତୀ ପଡ଼ିଗଲା କ୍ଷିତି
ପଳାଏ ଶକୁନି ତହୁଁ ହୋଇ ପାଦଗତି।
ତହୁଁ ତ କୋପରେ ଧାଇଁଣ ପବନ ଦୁଲାଳ
ଧାଡିକାରେ ଧଇଲେ ସେ ଶକୁନିର ବାଳ।
ଦକ୍ଷିଣରେ ଗଦା ବାମେ ଶକୁନିର କେଶ
ବୁକୁରେ ଆଣ୍ଠୁ ଦେଇଣ କରଇ ଝିଙ୍ଗାସ।
ଅନେକ ଅବସ୍ଥା ମାମୁଁ ଭୋଗିଅଛୁ ଆମ୍ଭେ
ତୋ ବୁଦ୍ଧିରେ ପଡ଼ି ମତ୍ତ ସର୍ବେ କଉରବେ।
ସୁମର ସୁମର ମାମୁଁ ତୋ ଇଷ୍ଟଦେବତା
ଡାକ କୌରବଙ୍କୁ ତୋତେ କେ ଅଛି ରଖନ୍ତା।
ତୋର ହୃଦ ବିଦାରିବି ଏହି ନଖେ ମୋର
ପିଇଣ ଶୋଣିତ ଆଜି ତୋଷିବି ଉଦର।
ଶକୁନି ନିଧନ ବୋଲି ଶୁଭିଲାକ ଧ୍ୱନି
ମାନଗୋବିନ୍ଦ ଉଠିଲା ଏହି ବାକ୍ୟ ଶୁଣି।
ଅନେଶତ ଭାଇଙ୍କୁ ସେ ଘେନିଣ ସଙ୍ଗର
ଦୁଃଶାସନ ଭେଟିଲା ଯେ ଭୀମର ଆଗର।
ବୀର ବିକ୍ରମ ଦେଖାଇ ଯାନ୍ତେ ଦୁଃଶାସନ
ଶକୁନିକୁ ଉପେକ୍ଷିଣ ଧାଏଁ ଭୀମସେନ।
ଭୀମ ଛାଡ଼ିଦ୍ୟନ୍ତେ ତହୁଁ ଶକୁନି ପଳାଇ
କୌରବ ସୈନ୍ୟଙ୍କ ମଧ୍ୟେ ଲୁଚିଲା ସେଯାଇ।
ଦୁଃଶାସନ ଦୁର୍ଜ୍ଜୟ ଯେ ପଳାଇଲେ ତ୍ରସ୍ତେ
ସମରେ ଗୋଳ ହୋଇଲା ଗଜ ଅଶ୍ୱ ରଥେ।
ଧାମନ୍ତେଣ ଉଡ଼ିଲା ସେ ଚରଣର ଧୂଳି
ତିମିରରେ ଆଚ୍ଛାଦିତ ହେଲେ ଅଂଶୁମାଳି।
ବାରଣ ନ ଗଲା ତହିଁ ପର କେ ଆପଣା
ଗହଳ ଧନ୍ଦୋଳାରେ ଯେ ସର୍ବେ ହେଲେ ବଣା।
କେଣେ ଇନ୍ଦ୍ରପ୍ରସ୍ଥ କେଣେ ଜଇନ୍ତା ବାରୁଣା
ପଥ ନ ପାଇଣ ସର୍ବେ ହୋଇଲେକ ବଣା।
ଯାହାକୁ ଯେ ଯହିଁ ଦେଖେ ପ୍ରହାରଇ ଗଦା
ପଡ଼ିଲେକ ବହୁ ସୈନ୍ୟ ଦିଶିଲାକ ପଦା।
ଗଜେ ଗଜ ପଡ଼ି ତହିଁ ହେଲେ ଛଟପଟ
ଅଶ୍ୱଙ୍କର ମୁଖ ବକ୍ର ଭଙ୍ଗ ଦେଲେ ଥାଟ।
ଅଶ୍ୱେକ ଆରୋହି ତହୁଁ ନକୁଳ କୁମର
ଶଲ୍ୟଙ୍କ ତୁଲେ କରିଲେ ସମର ଅପାର।
ଅନେକ ଶର ବିନ୍ଧିଲେ ଶଲ୍ୟ ମହାରଥୀ
ନକୁଳର ସୈନ୍ୟମାନେ ଲଭିଲେ ବିକୃତି।

ରାଗେ କୁମାର ମାଇଲା ନବନିଶି କୁନ୍ତ
ଚକ୍ରପ୍ରାୟେକ ଘୁରିଲା ଶଲ୍ୟଙ୍କର ରଥ।
ରଥରୁ ଡ଼େଇଁ ପଡ଼ିଲେ ଶାକଲ୍ୟର ରାଜା
ବହୁତ ସମର କଲେ ମାତୁଳ ଭଣଜା।
ରଥ ବୁଲାଇ ନକୁଳ ଦୂରେ ଫିଙ୍ଗିଦେଲା
ବେନି ଯୋଜନରେ ରଥ ପଡ଼ି ଚୂନା ହେଲା।
ଶଲ୍ୟଙ୍କୁ ନକୁଳ କଲେ ବହୁତ କଟାଳ
ରଣରଙ୍ଗେ ଶଲ୍ୟଙ୍କର ଧଇଲେ ସେ ବାଳ।
ବାମକରେ ବାଳ ଧରି ଡ଼ାହାଣେ କଟାରୀ
ନକୁଳ ବୋଇଲେ ଇଷ୍ଟ ସୁମର ତୋହରି।
ତା ଦେଖି ଧାଇଁ ଅଇଲା ସହଦେବ ମନ୍ତ୍ରୀ
ମାତାଙ୍କ ଭାଇ ଏ ଆମ୍ଭ ମଉଳା ହୁଅନ୍ତି।
ଏହାଙ୍କୁ ଉପେକ୍ଷା ତୁମ୍ଭେ କରିବା ହେ ଭାଇ
ପ୍ରାଣ ଘେନି ସମରୁ ଏ ଯାଆନ୍ତୁ ପଳାଇ।
ତାହା ଶୁଣିଣ ନକୁଳ ଛାଡ଼ିଦେଲା ବାଳ
ପଳାଇଲା ଶଲ୍ୟ ରଥୀ ହୋଇ ଅସମ୍ଭାଳ।
କନକ ରଥ ଆରୋହି ସହଦେବ ବୀର
ଅଶ୍ୱତ୍ଥାମା ସଙ୍ଗେ ଯାଇ କଲେକ ସମର।
ମାଦ୍ରୀସୁତ ସହଦେବ ମନ୍ତ୍ରୀ ଚୂଡ଼ାମଣି
ଭୂତ ଭବିଷ୍ୟତ ବର୍ତ୍ତମାନ ସବୁ ଜାଣି।
ସମରେ ଅନିବାରଣ ଅଟେ ଅଶ୍ୱତ୍ଥାମା
ଅସ୍ତ୍ର ପ୍ରତିଅସ୍ତ୍ର ଜାଣେ ସେହି ମହାତମା।
ଶରେ ଶର ବିନ୍ଧାବିନ୍ଧି ହେଉଛନ୍ତି ବେନି
ବେନିଶର ହାବୋଡ଼ନ୍ତେ ଉଠଇ ଯେ ବହ୍ନି।
ନକୁଳ ଦୁଃଶାସନ ଯେ ହେଲେ ଦୁହେଁ ଭେଟ
ନକୁଳ ଯେ ଏକା ଦୁଃଶା ସଙ୍ଗେ ବହୁ ଥାଟ।
ଗାନ୍ଧାରୀ ନନ୍ଦନ କରେ ଧରି ବେନି ଗଦା
ଦୁଇବଳ ମଧ୍ୟେ ସେହୁ ଅଟେ ମହାଯୋଦ୍ଧା।
ଦୁହେଁ ମହାବଳବନ୍ତ କ୍ଷତ୍ରୀ ମହାମଲ୍ଲ
ପାଷାଣକୁ ଭେଦୁଅଛି ଦୁହିଙ୍କର ବୋଲ।
ନକୁଳ ବୋଇଲା ଶୁଣ ଦେବ ଦୁଃଶାସନ
ସହୋଦର ଅନ୍ୟୋଅନ୍ୟ ହେଲୁ ଅକାରଣ।
ଦ୍ରୌପଦୀକୁ ବିବସନ କଲୁ ସଭାତଳେ
ତାର କେଶ ଧରି ଘେନିଗଲୁ ବାହୁବଳେ।
ଆଜିଯାଏ ତାର କେଶ ରହିଛି ମୁକୁଳ
ସେହିଦିନୁ ଅବନ୍ଧନ ଅଛି ଏହା ବାଳ।
ଉପାଡ଼ିଣ ତୋର ଦକ୍ଷ ଭୁଜ ବୃକୋଦର
ଶୋଣିତକୁ ନିଉଡ଼ିବେ ଦ୍ରୌପଦୀ କେଶର।
ତୋର ଭୁଜ ଶୋଣିତରେ କେଶକୁ ପଖାଳି
ତେବେ ସେ କେଶ ବାନ୍ଧିବେ ଦ୍ରୁପଦ ଦୁଲାଳି।
ଭୀମସେନ ଠାକୁରଙ୍କ ଦୃଢ଼ବ୍ରତ ଏହି
ଆମ୍ଭର ହସ୍ତରେ ତେଣୁ ତୋର ମୃତ୍ୟୁ ନାହିଁ।
ଗାନ୍ଧାରୀ ନନ୍ଦନ ଶୁଣି କୋପରେ ପ୍ରଜ୍ୱଳି
ଚଉଷଠି ଭାର ଗଦା ବୁଲାଇଣ ତୋଳି।

ଯେସନେକ ବର୍ଷାକାଳେ ହୋଏ ଝଡ଼ବାତ
ସେ ବାତେ ଉଡ଼ି ପଡ଼ିଲେ ଦୂରେ ଗଜଯୂଥ ।
ମାଦ୍ରୀନନ୍ଦନ ବୁଲାଏ ନବନିର୍ଣ୍ଣ କୁନ୍ତ
ସେ କୁନ୍ତ ଆଘାତେ ସୈନ୍ୟ ମରିଲେ ବହୁତ ।
ଦୁଃଶା ଉପରେ ନକୁଳ କୁନ୍ତ ପ୍ରହାରିଲା
ତାହା ଦେଖି ଦୁଃଶାସନ ଆଡ଼ ହୋଇଗଲା ।
ଦୁଃଶା ନକୁଳ ରଥରେ ଗଦାକୁ ପିଟିଲା
ନକୁଳ ସେହି ରଥକୁ ବଞ୍ଚାଇଣ ନେଲା ।
ପୁଣି କୁନ୍ତ ବୁଲାଇଣ ମାଦ୍ରୀଦେବୀ ବଳା
ରଥ ଉପରୁ ଓହ୍ଲାଇ ସତ୍ୱରେ ଧାଇଁଲା ।
ଦୁଃଶାସନ ରଥପରେ କୁନ୍ତ ନେଇ ପିଟି
ବେନିଖଣ୍ଡ ହୋଇ ଦୁଃଶା ରଥ ଗଲା ଫାଟି ।
ଦୁଃଶାକୁ ବିରଥୀ ଦେଖି ଦ୍ରୋଣି ଆବୋରିଲା
ସହଦେବ ନକୁଳର ପାଶରେ ରହିଲା ।
ନକୁଳ ଯେ ସହଦେବ ଏକ ସଙ୍ଗେ ଚଳି
ତାଙ୍କଆଗେ ଯୁଦ୍ଧେକେହି ନ ପାରନ୍ତିମିଳି ।
ଏହିପରି ସମର ଯେ ହେଲା ଘୋରତର
ବେଳ ଅବସାନେ ଅସ୍ତ ହେଲେ ଦିନକର ।
କୃପାଚାର୍ଯ୍ୟଙ୍କର ରଣ ଦୁର୍ଦ୍ଧକ୍ଷର ତୁଲେ
ବହୁତ ସମର ତହିଁ ଏହିଁ ଦୁହେଁ କଲେ ।
ଦ୍ରୋଣ ଆଉ ଦ୍ରୁପଦର ହୋଇଲା ସଂଗ୍ରାମ
ଅନୀତି ରଣ କରନ୍ତି ଦୁହେଁ ଛାଡ଼ି ଧର୍ମ ।
ଉଭୟ ମଧ୍ୟେ ପଡ଼ିଲେ ବହୁତର ରଥୀ
ଅନେକ ଯେ ପାଉିଦଣ୍ଡ ଅନେକ ପଦାତି ।
ଭୀଷ୍ମ ଅନ୍ଧକାର ଶର ବହୁ କଲେ ବୃଷ୍ଟି
ଅନ୍ଧକାର ଘୋଟିଅଛି ନ ଦିଶଇ ସୃଷ୍ଟି ।
ପର କେଆପଣା ବୋଲି ନ ପାରିଲେଚିହ୍ନି
ଆପଣା ଆପଣା ମଧ୍ୟେ ହେଲେ ହଣାହଣି ।
କେଣେ ଯେ ଉଦିତ କେଣେ ସୂର୍ଯ୍ୟ ଅସ୍ତଗଲା
ଏସନକ ରଣ ହେଲା ବାରଣ ନୋହିଲା ।
କାହାର ରଣେ ପଡ଼ିଲେ କେତେକେତେ ଯୋଧୀ
ଅନ୍ତ ନୋହିଲା ଯେ ମହାସମରେ ବିରୋଧୀ ।
ଦୁଇ ବଳଙ୍କୁ ବାଧିଲା ସେ ଦିନର ଯୁଦ୍ଧ
ରଥୀ ଯେ ପଡ଼ିଲେ ତହିଁ ପଚାଶ ପରାର୍ଦ୍ଧ ।
ଅଶୀ ପରାର୍ଦ୍ଧ ପଡ଼ିଲେ ଦୁଇବଳ ସେନା
ଅଶ୍ୱଯୋଦ୍ଧା ପଡ଼ିଲେକ ନୋହିଲା ଗଣନା ।
କେହୁ ଗଣିବ ପଦାତି ପଡ଼ିଲେ ବା କେତେ
ତାଳେକ ଉଚ୍ଚ ହୋଇଲେ ଯୋଜନ ପର୍ଯ୍ୟନ୍ତେ
କ୍ଷୁଧା ପିପାସା ଭୁଲିଲେ ହେଲା ଅର୍ଦ୍ଧରାତି
ଯୁଦ୍ଧ ପରିଶ୍ରମେ ସର୍ବେ ଅଶକତ ହୁନ୍ତି ।
ଯୁକତେ ପଉଷ ମାସ ଘୋଟିଲା କୁହୁଡ଼ି
ଶୀତରେ ଯୋଦ୍ଧାଏ ଶସ୍ତ୍ର ନ ପାରିଲେ ଧରି ।
ଅତି ଶୀତ ହେତୁ ସର୍ବେ କମ୍ପିତ ହୋଇଲେ
କାର୍ମୁକରେ ଶର ଯୋଚି ବିନ୍ଧି ନ ପାରିଲେ ।
ସୈନ୍ୟମାନଙ୍କର କଷ୍ଟ ଦେଖି ଜଗନ୍ନାଥ
ପାର୍ଥକୁ ବୋଇଲେ ଯୁଦ୍ଧ କର ହେ ସ୍ଥଗିତ ।
ଶଙ୍ଖଶବ୍ଦ କଲେ ଯହୁଁ ଦେବ କମ୍ବୁପାଣି
ରହିଲା ରଣ ଅଢ଼ାଇ ପ୍ରହର ରଜନୀ ।
କେତେବେଳେ କାହାରି ଯେଚେତନା ନଥିଲା
ସମରକ୍ଷେତ୍ରେ ଏପରି ଘଟଣା ହୋଇଲା ।
ମହାରଥୀ ରଥୀମାନେ ରଥେ ନିଦ୍ରାଯାନ୍ତି
ହସ୍ତୀମାନଙ୍କ ଉପରେ ଯୋଦ୍ଧାଏ ଘୁମାନ୍ତି ।
ଅଶ୍ୱଙ୍କ ପରେ ଶୋଇଲେ ଯୋଦ୍ଧା କୁନ୍ତ ଧରି
କେବଣ ଯୋଦ୍ଧା ଶୋଇଲେ ମଡ଼ାକୁଆବୋରି ।
ଏହିବେଳେ ସଞ୍ଜୟଙ୍କୁ ପୁଚ୍ଛେ ଧୃତରାଷ୍ଟ୍ର
ଏତେ ରାତ୍ର ହେଲା କିପାଁ ନ ଫେରିଲେ ଥାଟ ।
ସଞ୍ଜୟ ବୋଇଲେ ଶୁଣ ଅମ୍ବିକାର ସୁତ
ଦୁଇବଳ ଯୁଦ୍ଧ ଆଜ ହୋଇଲା ବହୁତ ।
ଭୀଷ୍ମ ଯେ ବିନ୍ଧିଲେ ଘୋର ଅନ୍ଧକାର ଶର
ଦିବସ ମଧ୍ୟେ ଘୋଟିଲା ଘୋର ଅନ୍ଧକାର ।
ଉଭୟ ସଇନ୍ୟମାନେ ହୋଇଲେକ ବଣା
ବାରଣ ନ ଗଲା ତହିଁ ପର କେ ଆପଣା ।
ଆଜିଦିନ ବଡ଼ ଗୋଳ ହୋଇଲା ସମରେ
ବହୁଗଜ ଅଶ୍ୱ ଯୋଦ୍ଧା ପଡ଼ିଲେ ଥାଟରେ ।
ଭୀଷ୍ମ ଆଦି ଅପମାନ ବହୁତ ପାଇଲେ
ଦଶ ସସ୍ର ରଥୀ ଆଜି ମାରି ନ ପାରିଲେ ।
ମାରି ନ ପାରିଣ ସୁଦ୍ଧା ରଣ ନ ଛାଡ଼ନ୍ତି
ରାତ୍ର ଅର୍ଦ୍ଧ ହୋଇଲାକ ରଣ ରଙ୍ଗେ ମାତି ।
ତାହା ଶୁଣି ସଞ୍ଜୟଙ୍କୁ ଧୃତରାଷ୍ଟ୍ର କହି
ଅର୍ଜ୍ଜୁନ ଜୀବନ ଧନ୍ୟ ସଂସାରେ ଅଟଇ ।
ରଥ ଗଜ ବହୁ ସୈନ୍ୟ ପଡ଼ିଲେ ଥାଟରେ
ଅଗଣ୍ୟ ସୈନ୍ୟ ପଡ଼ିଲେ ସମର ଭୂମିରେ ।
ଭୀଷ୍ମ ଦେବ ଅପମାନ ପାଇଲେ ବହୁତ
ତେବେ ଜିଣି ନ ପାରିଲେ ଜୟକଲା ପାର୍ଥ ।
ଦ୍ରୋଣଙ୍କର ତହୁଁ ସର୍ବେ ବିଦ୍ୟାଶିକ୍ଷା କଲେ
ଯୁଦ୍ଧରେ ପ୍ରସିଦ୍ଧ ପାର୍ଥ ହେଲା କେଉଁ ବଳେ ।
ସଞ୍ଜୟ ବୋଇଲେ ଶୁଣ ଶାନ୍ତନୁଙ୍କ ନାତି
ଦ୍ରୋଣଙ୍କର ବିଦ୍ୟାରେ କି ପାର୍ଥ ହୁନ୍ତା କ୍ଷତ୍ରି ।
ସତ୍ୟଯୁଗେ ଶ୍ୱେତନାମେ ରାଜା ଯାଗକଲା
ବଶିଷ୍ଠଙ୍କୁ ସେ ଆଚାର୍ଯ୍ୟ ପଣରେ ବରିଲା ।
ଦ୍ରୋଣ ପୁଷ୍କର ଆବର୍ତ୍ତ ଏହି ମେଘ ତିନି
ମୁନିବରଙ୍କର ହେଲେ ଏ ଶ୍ରୁବ ପ୍ରୋକ୍ଷଣି ।
ଘୃତ ସମୁଦ୍ରରୁ ଘୃତ ଆଣି ତିନି ମେଘେ
ମୂଷଳ ଧାରେ ବର୍ଷିଲେ ନେଇ ମହାଯାଗେ ।
ଏ ବିଧିରେ ଚତୁର୍ବିଂଶ ବର୍ଷ ମହାଯାଗେ
ଲୋଭେ ବୈଶ୍ୱାନର ଘୃତ ଖାଇଲେ ସରାଗେ ।
ମନ୍ଦାଗ୍ନି ହୋଇଣ ହେଲା ଲୁଦୁବୁଦୁ ବ୍ୟାଧି
ଇନ୍ଦ୍ରଙ୍କୁ ଅଗ୍ନି ଦେବତା ମାଗିଲେ ଔଷଧି ।

ବ୍ରହ୍ମା ବିଷ୍ଣୁ ରୁଦ୍ର ଚନ୍ଦ୍ର ସୂର୍ଯ୍ୟଙ୍କୁ ମାଗିଲା
କେହି ତାହାକୁ ପରମ ଔଷଧି ନ ଦେଲା ।
ଅଗ୍ନି ଦେବ ଏହିପରି ଔଷଧ ଖୋଜିଲା
ସତ୍ୟତ୍ରେତୟା ଯାଇଣ ଦ୍ୱାପରହୋଇଲା ।
ଏତେ କାଳଯାଏ ଯହୁଁ ନ ଯାନ୍ତେ ଔଷଧ
ମନ ମଧ୍ୟରେ ଅନଳ ହେଲେ ଅତି କ୍ରୁଦ୍ଧ ।
ପାର୍ଥଙ୍କ ଅଜ୍ଞାତବାସ ହୋଇଲା ଯେ କାଳେ
ଅନଳ ମନେ ବିଚାର କରେ ତେତେବେଳେ ।
ଏ ସମୟେ ଯେବେ ମୁହିଁ ପାର୍ଥ ପାଶେ-ଯିବି
ତାକୁ ଜଣାଇଲେ ନିଶ୍ଚେଁ ବ୍ୟାଧିରୁ ତରିବି ।
ଏହା ବିଚାରି ଅନଳ ବିପ୍ରରୂପ ହୋଇ
ବନେ ପାର୍ଥଙ୍କ ଅଗ୍ରତେ ମିଳିଲେକ ଯାଇ ।
ବୋଇଲେ ଦରିଦ୍ର ବିପ୍ର ଦେଖ ମୋ ଅବସ୍ଥା
ଭିକ୍ଷା ମାଗିବାକୁ ମୁହିଁ ନୁହଇ ଶକତା ।
ମୋହର ତହୁଁ ଦରିଦ୍ର ନାହିଁ ଆନ ଜନ
ମାତା ପିତାବନ୍ଧୁ ଆଦି ନାହିଁକେ ମୋଆନ ।
ଜନ୍ମହୁଁ ଦରିଦ୍ର ମୁହିଁ ବହୁକାଳୁ ରୋଗୀ
ଆହାର ମୈଥୁନ ନିଦ୍ରା ସର୍ବ ପରିତ୍ୟାଗୀ ।
ତୁହି ଜଗତବନ୍ଦନ ଅଟୁ ମହାମଲ୍ଲ
ତୋହର ପ୍ରସାଦେ ମୋରବ୍ୟାଧି ହେବ ଭଲ ।
ଶୂରବର ସୁନ୍ଦର ତୁ କକ୍ଷା ଜଗଜ୍ଜେଠି
ତ୍ରୈଲୋକ୍ୟ ପ୍ରସିଦ୍ଧ ବାବୁ ତୋର ନାମଗୋଟି ।
ତୋହର ଦର୍ଶନେ ମୋର ବ୍ୟାଧି ନଷ୍ଟ ପାଉ
ମୋର ସନ୍ତୋଷରେ ତୋର ଯଶ ବୃଦ୍ଧିହେଉ ।
ପାର୍ଥ ବୋଇଲେକ ତୁମ୍ଭେ ଶୁଣ ଦ୍ୱିଜବର
କିପରି ଆରୋଗ୍ୟ ହେବ ତୁମ୍ଭର ଶରୀର ।
ତହୁଁ ଅଗ୍ନି ଅର୍ଜ୍ଜୁନକୁ ସତ୍ୟ କରାଇଲେ
ମୁଁ ଯାହା ମାଗିବି ତୁହି ଦେବୁଟିକି ଭଲେ ।
ଅଗ୍ନିଙ୍କର ଏହିପରି ବଚନକୁ ଶୁଣି
ଊର୍ଦ୍ଧ୍ୱହସ୍ତେ ଜଳ ଟେକିଦେଲା ବୀରମଣି ।
ଅନଳ ବୋଇଲେ ତୁମ୍ଭେ ଶୁଣ ହେ ଅର୍ଜ୍ଜୁନ
ମୋର ରୋଗ ଭଲ ହେବ ଯେଉଁପରି ଜାଣ ।
ଖାଣ୍ଡବ ବନରେ ଅଛି ଆରୋଗ୍ୟ ଔଷଧି
ତା ଖାଇଲେ ଭଲ ହେବ ଲୁଦୁବୁଦୁ ବ୍ୟାଧି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ହୁତାଶନ
ସତ୍ୟ କରାଇଣ ମୋତେ କହିଲ କଷଣ ।
ନିଞ୍ଜନରୂପୀ ବୃକ୍ଷ ଖାଣ୍ଡବ ବନରେ
ଅଣାଶୀସସ୍ର ଯୂଣ ତା ଇନ୍ଦ୍ର ରକ୍ଷାକରେ ।
ଅନେକ ସଂଗ୍ରାମ ତହିଁ କରିବେ ମୋ ପିତା
ସତ୍ୟ କଲି ନ ଜାଣିଣ ହେ ଅଗ୍ନି ଦେବତା ।
କିରାତ ରୂପେ ବୁଲୁଛି ମୁହିଁ ଘୋରବନେ
ଇନ୍ଦ୍ର ସଙ୍ଗେ ଯୁଝିବି ମୁଁ କେହ୍ନେ ଶସ୍ତ୍ରହୀନେ ।
ଅଗ୍ନିଦେବ ବୋଇଲେ ତୁ ଥାଅ ଏହିଠାରେ
ସବୁ ଦେବଅସ୍ତ୍ର ଆଣିଦେବି ତୋତେ ଖରେ ।

ଅର୍ଜ୍ଜୁନକୁ ରୁହାଇଣ ଚଳିଲେ ବହନି
ବ୍ରହ୍ମାଣ୍ଡକୁ ଭେଦିଗଲେ ବୈକୁଣ୍ଠକୁ ପୁଣି ।
ବିଷ୍ଣୁଙ୍କୁ ମାଗିଲେ ଯାଇ ନନ୍ଦିଘୋଷ ରଥ
ଶଙ୍ଖ ଗୋକ୍ଷୁରାଦି ଚାରି ଅଶ୍ୱଙ୍କ ସହିତ ।
ମନଭେଦୀ ଶର ଆଉ ନାରାୟଣ ଅସ୍ତ୍ର
ଗାଣ୍ଡିବ ଧନୁ ଆବର ବିଷ୍ଣୁଙ୍କର ଶସ୍ତ୍ର ।
ଏ ସକଳ ଅସ୍ତ୍ର ନେଇ ଚଳିଲେ ବହନି
ଶିବପୁରେ ଯିବାପାଇଁ ବିଚାରିଲେ ପୁଣି ।
ତହୁଁ ଚଳିଗଲେ ଅଗ୍ନି କୈଳାସ ପର୍ବତେ
ରୁଦ୍ରଙ୍କୁ ମାଗିଲେ ବ୍ୟାଧି ଆରୋଗ୍ୟ ନିମନ୍ତେ ।
ପାଶୁପତ ଶର ଆଉ ପିନାକ କାର୍ମୁକ
ହରଷରେ ସଦାଶିବ ଦେଲେ ଯେ ଏତେକ ।
ଅକ୍ଷୟ ତୂଣ ଯେ ବେନି ମାଗନ୍ତେ ଉମାଙ୍କୁ
ସନ୍ତୋଷରେ ତାହା ଆଣି ଦେଲେ ଅନଳଙ୍କୁ ।
ବ୍ରହ୍ମାଙ୍କୁ ମାଗିଲେ ଯାଇ ଅଗ୍ନି ବ୍ରହ୍ମଶକ୍ତି
ସେହି ଶକ୍ତି ସମର୍ପିଲେ ତାଙ୍କୁ ବେଦପତି ।
ବୈଶ୍ୱାନର ବିଜେ କରି ନନ୍ଦିଘୋଷ ରଥେ
ସପ୍ତ ବ୍ରହ୍ମାଣ୍ଡ ବୁଲିଲେ ସେ କ୍ଷଣକ ମାତ୍ରେ ।
ଇନ୍ଦ୍ରଦେବଙ୍କୁ ମାଗିଲେ ସେ ଇନ୍ଦ୍ର ଶକତି
ପର୍ବତାସ୍ତ୍ର ଦେଲେ ହିମବନ୍ତ ନରପତି ।
ନିର୍ଘାତକୁ ମାଗିଲେ ସେ ମେଘଶସ୍ତ୍ର ବାଣ
ଅଗ୍ନିଶର ବଜ୍ରଛୌରୀ ଦେଲେ ତତକ୍ଷଣ ।
ଆଦିତ୍ୟଙ୍କୁ ମାଗିଲେ ଯେ ଚକ୍ର ସୂର୍ଯ୍ୟାବର୍ତ୍ତ
ହେମ ଶର ଦେଲେ ପୁଣି ଇନ୍ଦ୍ର ଦଇବତ ।
କୁବେରଠୁଁ ରତ୍ନାବଳୀ ଗଦା ମାଗିନେଲେ
ଏକ ରାତ୍ରକେ ସପତ ବ୍ରହ୍ମାଣ୍ଡ ବୁଲିଲେ ।
ପବନାଶର ମାଗିଲେ ପବନ ଦେବଙ୍କୁ
କାଳପାଶ ମାଗିଲେ ଯେ କୃତାନ୍ତ ଦେବଙ୍କୁ ।
ବରୁଣ ଦେବତାଠାରୁ ନେଇ ଜଳପାଶୀ
ଅନନ୍ତଙ୍କଠାରୁ ନେଲେ ନାଗପାଶ ଆସି ।
କଉଶିକ ଶର ଦେଲେ ଅଶ୍ୱିନୀକୁମାର
ପୃଥ୍ୱୀଭେଦି ଶର ଦେଲେ ପୁଂସ ଅସ୍ତ୍ର ବର ।
ସଞ୍ଜୟ କହିଲେ ଶୁଣ ରାଜା ଧୃତରାଷ୍ଟ୍ର
ତ୍ରିଦଶ ଦେବେ ଜାଣନ୍ତି ଅଗ୍ନିଙ୍କର କଷ୍ଟ ।
ଦେବତାଙ୍କୁ ମାଗୁଁ ଅଗ୍ନି ଆରୋଗ୍ୟ ନିମନ୍ତେ
ସର୍ବ ଦେବତାଏ ଅସ୍ତ୍ର ଦେଲେ ତୋଷ ଚିତ୍ତେ ।
କଉତୁକେ ମାଗିଆଣି ସେହି ଶରମାନ
ଅର୍ଜ୍ଜୁନ ପାଶେ ମିଳିଲେ ଆସି ହୁତାଶନ ।
ବୋଇଲେ ଆମ୍ଭ କଲ୍ୟାଣେ ସୁଖୀ ହୁଅ ପାର୍ଥ
ଏହି ଶସ୍ତ୍ରମାନ ତୋତେ ହେଉ ପରାପତ ।
ଅରଜୁନ ଆରୋହିଲା ନନ୍ଦିଘୋଷ ରଥ
ମାତଳିକୁ ଆଣି ଦେଲେ ଅଗ୍ନି ଦଇବତ ।
ଖାଣ୍ଡବ ବନକୁ ଗଲେ ଅଗ୍ନି ପାର୍ଥ ବେନି
ପାର୍ଥକୁ ରୁହାଇ ବନେ ଲାଗିଲେ ବହନି ।

ଉଣାଇଶସସ୍ର ଯୂଣ ଖାଣ୍ଡବର ସ୍ଥଳୀ
ଅଶୀସସ୍ର ଚାରିଶତ ବୃକ୍ଷ ଅଛି ପୂରି।
କ୍ଷୁଦ୍ରବୃକ୍ଷ ଯେତେ କେହୁ କରିବ. ଗଣନ
ସମସ୍ତ ଅଗ୍ନିଦେବତା କରିଲେ ଦହନ।
ଜାଣି ଅସଂଖ୍ୟ ସମର କଲା ମଘବାନ
ଯୁଦ୍ଧ ନ ସରିଲା ତିନିରାତ୍ର ତିନିଦିନ।
ଯକ୍ଷ ଗନ୍ଧର୍ବ ଚାରଣ ଦେବ ସଙ୍ଗେ ଘେନି
ଅର୍ଜ୍ଜୁନକୁ ହାରିଗଲେ ରଣେ ସସ୍ରଯୋନି।
ସୁଖରେ ଭକ୍ଷଣ କରେ ଅଗ୍ନି ମହୌଷଧି
ନିଷ୍କଳଙ୍କ ହେଲା ଅଙ୍ଗୁ ଗଲା ତାଙ୍କ ବ୍ୟାଧି।
ଖାଣ୍ଡବବନ ସମସ୍ତ ଦହନ ହୋଇଲା
ଶୋଷକ ସର୍ପ ବିବରେ ଗୋପ୍ୟ ହୋଇଥିଲା।
ଶୂନ୍ୟେ ରହିଲା ତାରାକ୍ଷୀ ନାମରେ ଯେ ପକ୍ଷୀ
ଅଗ୍ନିରାଜ ବୃକ୍ଷଗୋଟି ମାତ୍ର ରହିଅଛି।
ଭୁଞ୍ଜିଣ ତୁଷ୍ଟ ହୋଇଲେ ଦେବ ବୈଶ୍ୱାନର
ପାର୍ଥକୁ ବୋଇଲେ ତୋଷେ ମାଗ ମୋତେ ବର।
ତୋଯୋଗୁ ଶାନ୍ତ ହେଲା ମୋ ତିନିଯୁଗ ବ୍ୟାଧି
ତୋହର ମନର ବାଞ୍ଛା କରିବି ମୁଁ ସିଦ୍ଧି।
ପାର୍ଥ ବୋଇଲେ କି ବର ମାଗିବି ମୁଁ ତୋତେ
ଜାଣି ସବୁ ଅନୁଗ୍ରହ କର ଦେବ ମୋତେ।
ତାହା ଶୁଣିଣ ଆନନ୍ଦ ହେଲେ ବୈଶ୍ୱାନର
ଯେତେ ଅସ୍ତ୍ର ଆଣିଦେଲି ରହୁ ତୋର କର।
ତଳହସ୍ତ କରିଣ ଯେ ମାଗିଲେ ଅର୍ଜ୍ଜୁନ
ଉର୍ଦ୍ଧ୍ୱହସ୍ତ କରିଦେଲେ ଦେବ ହୁତାଶନ।
ତୃପତି ଲଭିଣ ତହୁଁ ଅନଳ ବୋଇଲେ
ବ୍ରହ୍ମା ବିଷ୍ଣୁ ଆଦିସମ ନୋହିବେ ତୋତୁଲେ।
ଅନେକ କାଳର ବ୍ୟାଧି ଗଲା ତୋ ଯୋଗରେ
କୋଟି ବ୍ରହ୍ମାଣ୍ଡର ଜିତା ହୁଅ ତୁ ସମରେ।
ବାଞ୍ଛାଫଳ ଦେଇ ତହୁଁ ଅଗ୍ନି ଚାଲିଗଲେ
ସେ ଅସ୍ତ୍ରମାନଙ୍କୁ ପାର୍ଥ ତୂଣୀରେ ରଖିଲେ।
ସଞ୍ଜୟ କହିଲେ ଶୁଣ ରାଜା କୁରୁସାଇଁ
ତେଣୁ ପାର୍ଥ ସମସ୍ତଙ୍କୁ ସମରେ ଜିଣଇ।
ତୁମ୍ଭେ ଯେ ବୋଇଲ ଏକା ଦ୍ରୋଣଙ୍କର ବିଦ୍ୟା
ତହିଁରେ କି ହୋଇଅଛି ପାର୍ଥ ଏତେ ଯୋଦ୍ଧା।
ଅଷ୍ଟମ ଦିବସ ଆସି ସମାପ୍ତ ହୋଇଲା
ଭୀଷ୍ମଙ୍କର ପ୍ରତିଜ୍ଞା ଯେ ବ୍ୟର୍ଥ ହୋଇଗଲା।
ଆଉ ରଣ କରିବାକୁ ଅଛି ବେନିଦିନ
ଏଥିରେ କି ରାଜା ତୁମ୍ଭେ ହେବ ଯଶସ୍ୱାନ।
ସଞ୍ଜୟ କହନ୍ତେ ଏହା ପ୍ରସରିଲା ରାତି
ଦଣ୍ଡ ସାଜ ବୋଲି ଆଜ୍ଞା ଦେଲେ କୁରୁପତି।
ରାଜା ଆଜ୍ଞାରେ ସାଜିଲେ ତହୁଁ ସମଦଣ୍ଡ
ଘୋର ବାଦ୍ୟ ଶବଦରେ କମ୍ପଇ ବ୍ରହ୍ମାଣ୍ଡ।
ସାଜନ୍ତି ଯୋଦ୍ଧାଏ ରଥ ଗଜ ଯେ ତୁରଙ୍ଗ
କଣୟେ ମଣ୍ଡିଣ ରଥ ଚଳାଇଲେ ବେଗ।

ଦିନକର ନାଥ ଉଦେ ହୋଇଲେ ପୂର୍ବରେ
ଅରୁଣ ବିକାଶ ପ୍ରାପ୍ତ ରଜତ ବର୍ଣ୍ଣରେ।
ସଂଜ୍ଞାର ବଲ୍ଲଭ ନାଥ ପୃଥ୍ୱୀଜନ ଚିନ୍ତା
ଅର୍କଦୈତ୍ୟ ନିସୂଦନ ବିହନ୍ତା ବିଧାତା।
ମେଘନାଦ କାଳିମେଘ ମେଘ ପିଙ୍ଗରୁଚି
ବୃଦ୍ଧଶ୍ରବା ସିଦ୍ଧଶ୍ରବା ଅଶ୍ୱସେନ ଯୋଚି।
ଏହି ସପ୍ତଅଶ୍ୱେ ତୋର ରଥେ ଯୋଚାଛନ୍ତି
ନିମିଷକ ମଧ୍ୟେ କୋଟି ବ୍ରହ୍ମାଣ୍ଡ ଭ୍ରମନ୍ତି।
ଶୂନ୍ୟେ ବିଚରଣ କର ଅର୍କ ନିସୂଦନ
ଦିଗମ୍ବର ପୁରୁଷ ତୁ ଦେବ ନିରଞ୍ଜନ।
କରଇ ପ୍ରାର୍ଥନା ମୁହିଁ ବିନୟ ଯୁକତେ
ଭକତବତ୍ସଳ ସ୍ୱାମୀ କୃପା କର ମୋତେ।
ପ୍ରଭାତେ ଉଦୟନାଥ ଉଦୟ ପର୍ବତ
ମେରୁ ପ୍ରଦକ୍ଷିଣ କରି ପଶ୍ଚିମରେ ଅସ୍ତ।
ପରମାନନ୍ଦ ପୁରୁଷ ଜଗଜ୍ଜନ ଗୁରୁ
ତୁହି ସିନା ଆଦିଅନ୍ତ ଜଗତରେ କରୁ।
ଜୟ ହେ ଅଭୟ ବରଦାତା ଦିନକର
ସୁରସିଦ୍ଧ ମୁନିମାନେ ଭକତ ତୋହର।
ସତ୍ୟ ଶଉର୍ଯ୍ୟ ପ୍ରଭୃତି ସ୍ଥାବର ଚୌଖାନି
ଶୂନ୍ୟରୁ ଜନମ କରୁ ସମସ୍ତ ନିର୍ମାଣି।
ଭଜଇ ମୁଁ ଅହର୍ନିଶି ତୁମ୍ଭ ପଦ୍ମପାଦେ
ମୁକତି ଲଭିବାପାଇଁ ତୁମ୍ଭର ପ୍ରସାଦେ।
ଶ୍ରୀଭାସ୍କର ଦେବଙ୍କର ଚରଣେ ଦଇନୀ
ମୁକତି ଇଚ୍ଛେ ଶାରଳା ଦାସ ଶୂଦ୍ରମୁନି।

☆ ☆ ☆

## ଭୀଷ୍ମଙ୍କର ନବମ ଦିନ ଯୁଦ୍ଧ ଓ ଦୁର୍ଯ୍ୟୋଧନ ନିକଟରୁ ଅର୍ଜ୍ଜୁନ ଦ୍ୱାରା ଅନର୍ଘମଣି ମୁକୁଟ ଆନୟନ

ବିଲଙ୍କ ଦେଶର ରାଜା ମନୁ ନରପତି
ଅଗସ୍ତିଙ୍କ ପାଦେ କଲେ ବିନୟେ ଭକତି।
ଅନୁଗ୍ରହ କର ତୁମ୍ଭେ ଋଷି ବ୍ରହ୍ମବେତ୍ତା
ପ୍ରଳୟୁ ବଞ୍ଚାଇବାକୁ ତୁମ୍ଭେ ଯେ ଶକତା।
ବାଳୁତ କାଳରେ ତୁମ୍ଭେ ଖେଳ କୁତୂହଳେ
ବାରାନିଧିକୁ ଗଣ୍ଡୁଷ କଲ ମନ୍ତ୍ରବଳେ।
ଏ ମହାଭାରତ ଅଟେ ଅଦୃଷ୍ଟ ଅଶ୍ରୁତି
ସଂସାର ଜନଙ୍କୁ ଦେଲ ତୁମ୍ଭେ ଗତି ମୁକ୍ତି।
କିପରି ସଂଗ୍ରାମ କଲେ ଭୀଷ୍ମ ନବଦିନ
ଏହା ସଂକ୍ଷେପିଣ ମୋତେ କହନ୍ତୁ ଆପଣ।
କହନ୍ତି ଅଗସ୍ତି ମୁନି ମହା ବ୍ରହ୍ମବେତ୍ତା
ଶୁଣ ଆହେ ବୈବସ୍ୱତ ମନୁ ମହାଶ୍ରୋତା।
ଅଷ୍ଟମ ଦିବସ ଅନ୍ତେ ପାଣ୍ଡବ ସଇନି
ଭୀଷ୍ମଙ୍କୁ ଜିଣିବାପାଇଁ କଲେ ଶଙ୍ଖଧ୍ୱନି।

ସାଜନ୍ତି ସେ ନନ୍ଦିଘୋଷ ତ୍ରିଦଶର ପତି
ସୁରସିଦ୍ଧ ମୁନିମାନେ ଯାକୁ ସଦା ଚିନ୍ତି ।
ସେ ସ୍ୱାମୀ ରଥେ ବିଜୟ ଶଙ୍ଖ ଚକ୍ରଧାରୀ
ଆକାଶେ ଗମନ୍ତି ଶଙ୍ଖଆଦି ହୟଚାରି ।
ଦିବ୍ୟ ମୂରତି ବିଚିତ୍ରବୀର୍ଯ୍ୟଙ୍କର ନାତି
ଚଳନ୍ତି ପାଣ୍ଡବବଳ ପଶ୍ଚିମ ମୂରତି ।
ବାଜଇ ଯେ ବୀରତୂର ଟମକ ଦାଉଣ୍ଡି
ଅନେକ ରତ୍ନେ ଯୋଦ୍ଧାଙ୍କ ରଥମାନ ମଣ୍ଡି ।
ପୂର୍ବରେ ପାଣ୍ଡବବଳ ପଶ୍ଚିମେ କୌରବ
ଆଗୁଆଣି ଥାଟେ ବିଜେ କଲେ ଭୀଷ୍ମଦେବ ।
ଚଉରାଶୀସସ୍ର ବଳ ଅଜଗବ ଧନୁ
ସସ୍ରାର୍ଜୁନ ପ୍ରାୟେ ଦିଶେ ଶାନ୍ତନୁଙ୍କ ସୂନୁ ।
ପାଣ୍ଡବଙ୍କ ବର୍ଣ୍ଣ ଯେହ୍ନେ ଅଗ୍ନିତେଜ ଦିଶି
ଖାଣ୍ଡବ ଦହନେ ଯେହ୍ନେ ଅଗ୍ନିତେଜରାଶି ।
ସେହିପରି ଭୀଷ୍ମଙ୍କର ତେଜ ଯେ ବିକାଶି
ସେହି ସଦୃଶେ ପାର୍ଥର ତେଜ ପରକାଶି ।
ପ୍ରତିଜ୍ଞା କରିଣ ସେହୁ ଛାଡ଼ିଲେ ଉପ୍ରୋଧ
କ୍ଷତ୍ରି ବୃତ୍ତି ରଖିବାରେ ଆରମ୍ଭିଲେ ଯୁଦ୍ଧ ।
ଅର୍ଜୁନଙ୍କର ନିର୍ଭର ସଂଗ୍ରାମକୁ ଦେଖି
ବିନ୍ଧିଲେ ନାରାଚ ଭୀଷ୍ମ ଉପ୍ରୋଧ ଉପେକ୍ଷି ।
ଲୁହାଶର ଶଙ୍ଖଚିଲ ପକ୍ଷ ତୀକ୍ଷ୍ଣ ମୁନା
ଟାଣି ବିନ୍ଧନ୍ତେ ଭେଦିଲା ଅର୍ଜୁନର ସେହ୍ନା ।
ବାସବର ନନ୍ଦନ ଯେ କକ୍ଷା ଜଗଜ୍ଜେଠି
ବିସ୍ତାର କରିଣ ପଞ୍ଚଶର କଲା ବୃଷ୍ଟି ।
ଶରେ ଶର ବାଜିଣ ଯେ ହେଲା ପଡ଼ିତାଳ
ଝଲକିଲା ଅଗ୍ନି ଜାଣି ବଡ଼ବା ଅନଳ ।
ପୁନରପି ବିନ୍ଧିଲେ ଯେ ଭୀଷ୍ମ ଦଶବାଣ
ଯେସନେକ ବଳାହକେ କ୍ଷେପନ୍ତି ଗଗନ ।
ବାସବ ସୁତ ବିନ୍ଧିଲା ତହୁଁ ଦଶ ଶର
ଭୀଷ୍ମଙ୍କର ନାରାଚକୁ କଲା ନାରଖାର ।
ଗଙ୍ଗାର ନନ୍ଦନ ତହୁଁ ସସ୍ରେବାଣ ପେଷି
ଆକାଶ ପଥ ଘୋଟିଣ ନାରାଚ ବରଷି ।
ଅନୁକ୍ଷଣେ ବିନ୍ଧନ୍ତି ସେ ଶର ପୁଣି ପୁଣି
ବ୍ୟଗ୍ରହସ୍ତେ ପାର୍ଥ ତାହା ଦୂରୁ ଦିଏ ହାଣି ।
ବେନିଯୋଦ୍ଧା ସମକେହି ନୁହନ୍ତି ଯେସାନ
ଅହୋବଳ ମଧ୍ୟେ ଦୁହେଁ କରନ୍ତି ସଂଗ୍ରାମ ।
ଦ୍ରୋଣ ଦ୍ରୁପଦର ତେଣେ ବଢ଼ିଲା ସମର
ଦୁଃଶାସନ ମାରୁତିର ରଣ ଘୋରତର ।
ସହଦେବ ଶକୁନିର ରଣେ ହେଲା ଭେଟ
ଜାଣନ୍ତି ସେ ଗତାଗତ ସମରେ ଗରିଷ୍ଠ ।
ଲକ୍ଷ୍ମଣ କୁମର ତୁଲେ ଯୁଝେ ଅଭିମନ୍ୟୁ
ବାଜିଲା ଯେ ରଣଗୋଳ ଏହି ବେନି ସୂନୁ ।
ନକୁଳର ସଙ୍ଗେ ରଣ କରଇ ଦୁର୍ଜ୍ଜୟ
ସମରରେ ଦୁହିଙ୍କର ଅଭେଦ ଯେ କାୟ ।

କର୍ଣୟରଥ ଆରୋହି ଯେ ଧୃଷ୍ଟଦ୍ୟୁମନ
ଅଶ୍ୱଥାମା ତୁଲେ ସେହୁ କରଇ ସଂଗ୍ରାମ ।
ସୋମଦତ୍ତ ସହିତରେ ଶିଖଣ୍ଡୀ ସମର
ବାଳାଦିତ୍ୟ ପ୍ରାୟ ଦିଶେ ଦୁହିଁଙ୍କ ସମର ।
ଆର୍ଦ୍ରାବଳି ସମ ଧନୁ ଦୁହିଙ୍କର ହସ୍ତେ
ଅନ୍ଧାର ଦିଶଇ ଦୁହେଁ ଶସ୍ତ୍ର ଯେ ବିନ୍ଧନ୍ତେ ।
ପଞ୍ଚଷଠି ନାରାଚକୁ ଘେନି ସୋମଦତ୍ତ
ବିନ୍ଧନ୍ତେ ଭେଦିଲା ଯାଇ ଶିଖଣ୍ଡୀର ଗାତ୍ର ।
ଯେସନେକ ସର୍ପମାନେ ପଶନ୍ତି ବିବରେ
ସେହିପରି ଭେଦିଲା ଏ ଶିଖଣ୍ଡୀ ଶରୀରେ ।
ଘାଏ ମୂର୍ଚ୍ଛାଗତ ହେଲା ପଦ୍ମାବତୀ ବତ୍ସା
ଡାକେ ସୋମଦତ୍ତ ତୋତେ କେହୁ କରୁରକ୍ଷା ।
ଯଦ୍ୟପି ପ୍ରାକର୍ମବନ୍ତ ହେବ ଗଜମତ୍ତ
କେଶରୀ ଛାମୁରେ କିବା ତାହାର ଆୟତ୍ତ ।
ଏପରି ବହୁ ପ୍ରତିଜ୍ଞା କରି ସୋମଦତ୍ତ
ପାଞ୍ଚାଳ କୁମର ତହିଁ ହୋଇଲା ଅଚେତ ।
ତେଣୁକରି ସୋମଦତ୍ତ ଯୁଦ୍ଧେ କଲା ହେଳା
ଚେତା ପାଇଣ ଶିଖଣ୍ଡୀ ଗର୍ଜିଣ ଉଠିଲା ।
ଗନ୍ଧର୍ବ ଅସ୍ତ୍ର ଗୋଟିକ ଧରି ତୁଳାକର୍ଣ୍ଣ
ଗୁଣେ ଯୋଖି ଟଙ୍କାରିଲା ତାହା ଘନ ଘନ ।
ଏକତ୍ରରେ କି ସହସ୍ରେ ଆଦିତ୍ୟ ବିକାଶି
ସେ ତେଜେ ପ୍ରଭାତ ହୁଏ ଅନ୍ଧକାର ନିଶି ।
ଆକାଶ କମ୍ପଇ ସେହୁ ଶରକୁ ପେଷନ୍ତେ
ବୃନ୍ଦାର୍କେ ଦେଖିଣ ଭୟ କଲେ ଶୂନ୍ୟପଥେ ।
ଆକାଶେ ଅଦୃଶ୍ୟ ହେଲା ତେଜକର ତାର
ଧନୁରୁ ଗନ୍ଧର୍ବ ଶର ହୁଅନ୍ତେ ବାହାର ।
ସେହି ଶରକୁ ଶିଖଣ୍ଡୀ ଏହି ଆଜ୍ଞା ଦେଲେ
ସୋମଦତ୍ତ ଶିର ବେଗେ କାଟ ତୁ ବୋଇଲେ ।
ଆଜ୍ଞା ପ୍ରମାଣେ ସେଅସ୍ତ୍ର ଶୀଘ୍ରଯାଇ ଘୋଟି
ଲକ୍ଷେ ଶର ସୋମଦତ୍ତ କଲା ତହୁଁ ବୃଷ୍ଟି ।
ମହାବଳ ବିକାଶିଲା ଦେବ ଅସ୍ତ୍ର ତେଜ
ସୋମଦତ୍ତ ଶର ସବୁ କରିଲା ଦହିଯ୍ୟ ।
ସୋମଦତ୍ତର ଆଗରେ ଘୋଟିଣ ଆସିଲା
ତା ରଥ ହୟ ସାରଥି ଭସ୍ମ କରିଦେଲା ।
ମହାଭୟ ପାଇଲା ତା ସୋମଦତ୍ତ ଦେଖି
ରମ୍ଭାପତ୍ର ପରି କମ୍ପେ ବୁଜି ବେନି ଆଖି ।
ଗନ୍ଧର୍ବ ଶର ପଡ଼ିଲା ଯାଇ ହୃଦଗତେ
ପିଠିକି ନିକିଳି ଯାନ୍ତେ ପଡ଼ିଲା ଅଚେତେ ।
ଜମ୍ବୁଦୈତ୍ୟ ନାଶଗଲା ଯେ ଅସ୍ତ୍ର ଆଘାତେ
ତାହାର ଆଘାତେ ନର ବଞ୍ଚିବ କେମନ୍ତେ ।
ଶିଖଣ୍ଡୀର ବାଣଘାତେ ସୋମଦତ୍ତ ମଲେ
ଶିଖଣ୍ଡୀକି ସୋମଦତ୍ତ ସୈନ୍ୟ ଯେ ଘେରିଲେ ।
ଅନୁକ୍ଷଣେ ନାରାଚ ଯେ ସମସ୍ତେ ବରଷି
ଧର୍ମ ଲଙ୍ଘିଣ ବିନ୍ଧିଲେ ସର୍ବେ ବାଣରାଶି ।

ନକ୍ଷତ୍ର ମଧ୍ୟରେ ଯେହ୍ନେ ଦିଶେ ନିଶାପତି
ସମର କ୍ଷେତ୍ରେ ଶିଖଣ୍ଡୀ ଦିଶେ ସେହିମତି ।
ସମୁଦ୍ର ମନ୍ଥନେ ଯେହ୍ନେ ଦିଶନ୍ତି ଅନନ୍ତ
ସେହି ପ୍ରକାରେ ଦିଶଇ ପଦ୍ମାବତୀ ସୁତ ।
ଶୁଖିଲା କାଠରେ ଯେହ୍ନେ ପ୍ରଜ୍ୱଳିତ ଅଗ୍ନି
ଥାଟେ ବକାଶେ ଶିଖଣ୍ଡୀ ସହି ତେଜ ଜାଣି ।
ଶ୍ରୀଭୁଜେ ଧନୁ ତାହାର ପିନାକ ସଦୃଶ
ଯୋଦ୍ଧା ହୋଇ ନ ରହିଲେ କେହିତାର ପାଶ ।
ଆସିଣ ଘେରିଲେ ତାକୁ ପଞ୍ଚସସ୍ର ରାୟେ
ଶିଖଣ୍ଡୀକି ଦିଶନ୍ତି ଯେ ଅଜାୟୂଥ ପ୍ରାୟେ ।
ବିଚିତ୍ର ନାରାଚ ଘେନି ପାଞ୍ଚାଳର ସୁତ
କୌରବ ଥାଟକୁ ସେହି ଏକା କରେ ହତ ।
ଏକଶର ବିନ୍ଧନ୍ତେ ସେ ପାଞ୍ଚଦଶ ଫୁଟି
ଅୟୁତେ ବାଣ ଘାନ୍ତିକେ ସେହୁ କରେ ବୃଷ୍ଟି ।
ଅହୋବଳ ପ୍ରଶଂସନ୍ତି ଶିଖଣ୍ଡୀ ମହିମା
ସାଧୁ ସାଧୁରେ ଶିଖଣ୍ଡୀ ତୁହି ମହାତମା ।
ତୁଳାକର୍ଣ୍ଣ ବିଦ୍ୟା ଯୋଗେ ଅଟୁ ସାମରଥ
ଯେବଣ ନାରାଚ ବିନ୍ଧେ ସେ ହୁଏ ଅବ୍ୟର୍ଥ ।
ନାରାଚମାନେ ବିନ୍ଧନ୍ତେ ନ ଦିଶଇ ମୁନ
ସମରେ ବିମୁଖ ହେଲେ ତହିଁ ସର୍ବ ସୈନ୍ୟ ।
ଅନେକ ନାରାଚ ବିନ୍ଧିବାରୁ କ୍ଷତ୍ରୀମାନେ
ଅଭେଦ୍ୟ କବଚେ ନ ଭେଦନ୍ତି ତୀକ୍ଷ୍ଣ ମୁନେ ।
ଅସ୍ତ୍ରର ସ୍ତମ୍ଭନ ଜାଣେ ତୁଳାକର୍ଣ୍ଣ ବିଦ୍ୟା
ତେଣୁକରି ଶିଖଣ୍ଡୀ ଯେ ରଣେ ମହାଯୋଦ୍ଧା ।
ଅନର୍ଯ୍ୟାପ ଶର ଜାଣେ ଦ୍ରୁପଦର ବଳା
ଅପାଲଟ ଶରେ ତହୁଁ ଘୋର ଯୁଦ୍ଧ କଲା ।
ଯେସନେକ ଚୂତଫଳ ପଡ଼େ ବାତଘାତେ
ପଡ଼ିଲେ ଅନେକ ରଥୀ ଶିଖଣ୍ଡୀ ବିଘାତେ ।
ଶୋଣିତ ନଦୀ ବହିଲା ଶିଖଣ୍ଡୀର ଯୁଦ୍ଧେ
ପାଞ୍ଚସସ୍ର ରଥୀ ମଲେ ସାତଘଡ଼ି ମଧ୍ୟେ ।
ଶିଖଣ୍ଡୀର ରଣ ଦେଖି କଉରବେ ଭାଜି
ଏକାଳେ ଶିଖଣ୍ଡୀ କୋପେ ଧାଏଁ ଗଳଗାଜି ।
ରଣରଙ୍ଗେ ବିଜୟ କି କୃତାନ୍ତ ଦେବତା
କ୍ଷତ୍ରୀ ହୋଇ ତାଛାମୁରେ ନାହିଁ କେ ରହନ୍ତା ।
ଭୀଷ୍ମଙ୍କ ଆଗେ କହିଲେ ଯାଇଁ ଚାରଗଣେ
କୁରୁସୈନ୍ୟ ଶେଷ ହେଲେ ଶିଖଣ୍ଡୀର ରଣେ ।
ଶୁଣି କୋପାନଳ ହେଲେ ଭାରତର ମଲ୍ଲ
ସଂଶୟ ଲାଗିଲା ମୋତେ କୃପଙ୍କର ବୋଲ ।
କୋପେଣ ବୋଇଲେ ଭୀଷ୍ମ ଛାଡ଼ି ଧର୍ମବାଟ
ଆଜ ନିଶ୍ଚେ ଦହିବି ମୁଁ ପାଣ୍ଡବଙ୍କ ଥାଟ ।
ନୀଳବାଣ ଭୁଜବାଣ ଗଙ୍ଗା ଦେଇଥିଲେ
କ୍ରୋଧେ ଭୀଷ୍ମ ସେହି ଦୁଇ ବାଣକୁ କାଢ଼ିଲେ ।
ମହାବୃଷ୍ଟି କାଳେ ଯେହ୍ନେ ଗର୍ଜ୍ଜଇ ଜଳଦ
ସେହି ପରାୟେ ଶୁଭଇ ଭୀଷ୍ମ ଗୁଣନାଦ ।

କାଳାନ୍ତକ କାଳେ ଯେହ୍ନେ ବିକାଶେ ଦହନ
ବେନି ବାଣଙ୍କର ତେଜେ ଦିଶଇ ତେସନ ।
ନୀଳବାଣ ଅଟଇ ଯେ ପ୍ରତ୍ୟକ୍ଷରେ ହରି
ଯେହୁ ଭୁଜବାଣ ସେହୁ ରୁଦ୍ର ଅବତରି ।
ଯୁକତେ ଅଟନ୍ତି ହରି ହର ଏକ ଆତ୍ମା
କଉତୁକେ ଶରରୂପ ଧଇଲେ ମହାତ୍ମା ।
ସଂସାରକୁ ସେ ଦହନ କରିବା ନିମନ୍ତେ
ନୀଳବାଣ ଭୁଜବାଣ ଧଇଲେକ ହସ୍ତେ ।
ବ୍ରହ୍ମା ରୁଦ୍ର ଚନ୍ଦ୍ର ସୂର୍ଯ୍ୟ ଆଉ ଦିଗପାଳ
ହେଲେ ମଧ୍ୟ ଏହାଙ୍କର ପୂରାଇବ କାଳ ।
ସେହି ଅସ୍ତ୍ରକୁ ସମାନ ନୋହେ ଫାଲଗୁନି
ଧର୍ମକୁ ଲଙ୍ଘିଣ ଭୀଷ୍ମ ବିନ୍ଧିଲେ ତା ଘେନି ।
ସେ ଦୁଇ ଅସ୍ତ୍ରର ତେଜ ଉଲ୍‌କାପାତ ଜିଣି
ଆକାଶେ ଅଦୃଶ୍ୟ ହେଲେ ଦିନକର ମଣି ।
ତ୍ରାସେ ଘୁଞ୍ଚିଗଲେ ଦୁଇବଳର ସଇନି
ଭୀଷ୍ମ ରଖ ବୋଲିକରି ଶୁଭିଲାକ ଧ୍ୱନି ।
ନନ୍ଦିଘୋଷ ରଥକୁ ଯେ ବିକାଶିଲା ତେଜ
କ୍ଷଣମାତ୍ରେ ରଥ ନିକି ହୋଇବ ଦହିଯ୍ୟ ।
ଅର୍ଜ୍ଜୁନ ବୋଲନ୍ତି ତୁମ୍ଭେ ଶୁଣ ବାସୁଦେବ
ଭୀଷ୍ମଙ୍କର ତେଜମୋତେ ବଡ଼ ଅସମ୍ଭବ ।
ସଂଗ୍ରାମ ହୋଇଲା ନବଦିନ ପରିଯନ୍ତେ
ଏମନ୍ତ ଶର ତ ଦେଖାନାହିଁ ଭୀଷ୍ମ ହସ୍ତେ ।
ପ୍ରଳୟ ଅନଳ ପ୍ରାୟ ଭୀଷ୍ମ ଅସ୍ତ୍ର ତେଜ
ପାରିଲେ ପାଣ୍ଡବବଳ ରଖ ଦେବରାଜ ।
ପାର୍ଥ ମୁଖୁ ଦୁରାପଦ ବଚନକୁ ଶୁଣି
ମନେ ବିଚାରନ୍ତି ପ୍ରଭୁ ଦେବ ଚକ୍ରପାଣି ।
ନାରାଚ ନିକଟେ ଦେଖି ତ୍ରାସେ ଫାଲଗୁନି
ଶରୀର କମ୍ପଇ ଧନୁ ନ ପାରଇ ଘେନି ।
ବିଚାର କରନ୍ତି ହରି ପାର୍ଥ ଭୟକଲା
ଆଜି ନିଶ୍ଚେ ପାଣ୍ଡବଙ୍କ ସୈନ୍ୟ ନାଶଗଲା ।
ଏହି ଅସ୍ତ୍ର ନାଶିବାକୁ ନାହିଁ ତାର ବୁଦ୍ଧି
ନିଶ୍ଚେ ଦୁର୍ଯ୍ୟୋଧନେ ଭୀଷ୍ମ ଦେଲାକ ସମୃଦ୍ଧି ।
ଶସ୍ତ୍ର ନ ଧରିବି ଯେବେ ମୁହିଁ ଏତେବେଳେ
ପାଣ୍ଡବେ ମରିବେ ନିଶ୍ଚେ ଭୀଷ୍ମ ସରାନଳେ ।
ନୀଳ ଭୁଜବାଣ ଦେଖି ପଣ୍ଡୁବଳ ଘୁଞ୍ଚି
ତିନି ଯୋଜନରେ ଏକା ନନ୍ଦିଘୋଷ ଅଛି ।
କଉରବ ସୈନ୍ୟମାନେ ଗଲେ ଅପସରି
ତିନି ଯୋଜନେ ରହିଲେ କୁରୁ ଦଣ୍ଡଧାରୀ ।
ଭୀଷ୍ମ ପାର୍ଥ ବେନି ରଥୀ ପୁଣି ରହିଛନ୍ତି
ସୁଦର୍ଶନ ଚକ୍ର କରେ ଧରି ଯଦୁପତି ।
ନନ୍ଦିଘୋଷ ରଥୋପରୁ ଅଇଲେ ଉତୁରି
ନୀଳ ଭୁଜବାଣ ଦେଖି ଗଲେ ଅପସରି ।
ଅଧରେ ଦନ୍ତ ଚାପିଣ ଚକ୍ର ଧରି କରେ
ଧାତିକାରେ ଉଠିଲେ ସେ ଭୀଷ୍ମ ରଥପରେ ।

ଦେଖିଣ ତ୍ରାସରେ ତାହା ଶାନ୍ତନୁନନ୍ଦନ
କୃଷ୍ଣ ଦେଖି ଭୀଷ୍ମ ତେଜ୍ୟା କଲେ ଧନୁର୍ବାଣ ।
ରଥରେ ଥାଇ ଗାଙ୍ଗେୟ ହେଲେ ପରଣାମି
ଶିରେ କରଯୋଡ଼ି ବୋଲେ କୋପ କିପାଁ ସ୍ୱାମି ।
ତୁ ଯେବେ ସମର ଇଚ୍ଛା କଲୁ ମହାବାହୁ
ତୋବିବାଦେ କଉରବେ ବର୍ତ୍ତିବେ ବା କାହୁଁ ।
କୋପେ ବୋଲନ୍ତି ଭୀଷ୍ମଙ୍କୁ ଦେବ ଚକ୍ରପାଣି
ନିଶ୍ଚୟ ଏ ଚକ୍ରେ ତୋତେ ପକାଇବି ହାଣି ।
ନୀଳବାଣ ଭୁଜବାଣ ଦୁହେଁ ଏକଆତ୍ମା
ସେ ଶସ୍ତ୍ର ପେଶନ୍ତେ ସ୍ୱର୍ଗେ ତ୍ରାସିଲେକ ବ୍ରହ୍ମା ।
କ୍ଷୀରୋଦଶାୟୀ ହୋଇଲେ ଭୟେ ଦେବଲୋକେ
ସ୍ୱର୍ଗ ତେଜି ପଳାଇଲେ ସର୍ବ ବୃନ୍ଦାରକେ ।
ଯମ ସଂଯମନୀ ଛାଡ଼ି ଷଡ଼ଯୂଣେ ରହେ
ବିହନ୍ତାପୁଂସେ ପାତାଳେ ଗୋପ୍ୟ ହେଲେଭୟେ ।
ନବଦିନ ଯାଏ କଲୁ ବିହିତ ସଂଗ୍ରାମ
ଏତେଦିନେ ଆଜି ତୁହି ଛାଡ଼ିଲୁଟି ଧର୍ମ ।
କଳିକାଳ ଅନ୍ତେ ହେବ କଲ୍କି ଅବତାର
ମ୍ଳେଚ୍ଛ ନିଧନାର୍ଥେ ହେବ ଏ ଅସ୍ତ୍ର ବାହାର ।
ଜନ୍ତୁଙ୍କର ନାଶ ପାଇଁ କଲ୍କି ନାରାୟଣ
ସେ କାଳେ ଏ ଅସ୍ତ୍ର ଧରି କରିବେ ନିଧନ ।
ଯେବେ ଧାତା କ୍ଷୀରୋଦରେ ଥିଲେକ ସେଶୋଇ
ଜାହ୍ନବୀ ଏ ଅସ୍ତ୍ର ତୋତେ ଦେଲାକ ଚୋରାଇ ।
ଏ ଦେବ ଅସ୍ତ୍ରକୁ ତୁହି କିପାଇଁ ଭରସୁ
ମାନବ ଯୁଦ୍ଧରେ ତୁହି ଦେବଶର ପେଷୁ ।
ଭୀଷ୍ମ ବୋଇଲେ ହେ ହରି କୋପତେଜ ମୋତେ
ତେବେ ସତ୍ୟବାକ୍ୟ କହିପାରିବି ମୁଁ ତୋତେ ।
ହରି ବୋଇଲେ ବାହୁଡ଼ା ତୋର ଏହି ଶର
ବିଳମ୍ବ କରିଲେ ନାଶ ହୋଇବ ସଂସାର ।
ନାରାୟଣ ବାକ୍ୟେ ଭୀଷ୍ମ ମନେ ଚିନ୍ତି ତାଙ୍କୁ
ବାହୁଡ଼ାଇ ସଂହାରିଲେ ତୂଣେ ସେ ଶରକୁ ।
ଭୀଷ୍ମ ବୋଲେ ହରି ମୋତେ କର ପ୍ରତିକାର
ଚକ୍ର କିପାଁ ନ କରୁଛ ମୋ ଗଳେ ପ୍ରହାର ।
ଆଜି ବୈକୁଣ୍ଠ ପୁରକୁ କରି ମୁହିଁ ଇଚ୍ଛା
ନୀଳ ଭୁଜବାଣ ପେଷି ଚକ୍ରେ କଲି ବାଞ୍ଛା ।
ମୁକ୍ତି ଚିନ୍ତାମଣି ମୋର ମୁକ୍ତି ନ ଚିନ୍ତିଲୁ
ହେଲେ ନ ମାରିଣ କିପାଁ ଚକ୍ର ସଂହାରିଲୁ ।
କୃଷ୍ଣ ବୋଇଲେକ ତୁହି ଅଟୁ ମହାଜ୍ଞାନୀ
ବୈକୁଣ୍ଠ ପୁରକୁ ତୋତେ ସଙ୍ଗେ ଯିବି ଘେନି ।
ଭୀଷ୍ମ ବୋଇଲେ ମୋଠାରେ ଏଡ଼େକ ସଦୟ
ତୋତେ ଭକ୍ତି କରି ନାହିଁ ଦିନେ ଦେବରାୟ ।
ଭୀଷ୍ମଙ୍କୁ ବୋଲନ୍ତି ତହୁଁ ପ୍ରଭୁ ଦେବରାଜ
ତୋହର ଯୋଗେ ହୋଇବ ମୋରବହୁକାର୍ଯ୍ୟ ।
ଭୀଷ୍ମ ବୋଇଲେକ ହରି ତୁହି ବିଶ୍ୱବାସ
ମୁଁ ହୀନ କରିବି ତୋର କାର୍ଯ୍ୟ ଅବା କିସ ।
ହରି ବୋଇଲେ ପାଣ୍ଡବେ ମୋର ପଞ୍ଚଆତ୍ମା
ତାହାଙ୍କ ବିବାଦୀ ତୁହି ନ ହୁଅ ମହାତ୍ମା ।
ଭୀଷ୍ମ ବୋଇଲେକ ହରି କରୁଛି ଦଇନୀ
ଆଜରାତ୍ରେ ବିଜେ କର ପାଣ୍ଡବନ୍ତ ଘେନି ।
ଯେବେ ପାଣ୍ଡବଙ୍କୁ ଦୟା କଲ ହେ ଗୋବିନ୍ଦ
ଆଜି ନିଶ୍ଚେ କହିବଇଁ ମୋର ମୃତ୍ୟୁ ଭେଦ ।
ପୁରି ଭୀଷ୍ମ ବୋଲେ ଶୁଣ ପୁରୁଷ ଉତ୍ତମ
ଆଜହୁଁ ସରିଲା ଜାଣ ମୋହର ସଂଗ୍ରାମ ।
ଦଶସସ୍ର ରଥୀ ମୁହିଁ ଆଜ ମାରିବଇଁ
ଏଥିପାଇଁ କୋପ ମୋତେ ନ କର ଗୋସାଇଁ ।
ଗୋବିନ୍ଦ ବୋଇଲେ କର ଯେ ତୋହରଇଚ୍ଛା
ପାଣ୍ଡବଙ୍କୁ ରଖି ପୂର୍ଣ୍ଣ କର ତୋର ବାଞ୍ଛା ।
ଭୀଷ୍ମଙ୍କୁ ଦୃଢ଼ ପ୍ରତିଜ୍ଞା କରାଇ ଅଚ୍ୟୁତ
ବାହୁଡ଼ା ବିଜୟ କଲେ ନନ୍ଦିଘୋଷ ରଥ ।
ଶସ୍ତ୍ରର ନିଉନ ଦେଖି ଧାଇଁ ବେନିବଳ
ପୁଣିହିଁ ବଢ଼ିଲା ତହିଁ ମହାରଣ ଗୋଳ ।
ଚଉଦ ଘଡ଼ି ଆସିଣ ହୋଇଲାକ ଦିନ
ବହୁ ଶ୍ରମ ପାଇଲେକ ଉଭୟଙ୍କ ସୈନ୍ୟ ।
ଭୀଷ୍ମଙ୍କର କଥା ହରି କହନ୍ତି ପାର୍ଥକୁ
ସମର କରଇ ପାର୍ଥ ଚାହିଁଣ ହରିଙ୍କୁ ।
କୋଟିଏ କିରଣ ବାଣ ବିନ୍ଧି ଭୀଷ୍ମରଥୀ
ମାଇଲେକ ଦଶସସ୍ର ଯୋଦ୍ଧା ତତ୍‌କ୍ଷଣାତି ।
ସମର କରନ୍ତେ ତହିଁ ସୂର୍ଯ୍ୟ ଅସ୍ତ ହେଲେ
ଦୁଇବଳ ଯୁଦ୍ଧ ତେଜି ଯେଝାପୁରେ ଗଲେ ।
ସ୍ନାନ ସନ୍ଧ୍ୟା ସାରି ତହିଁ ରାଜା କୁରୁପତି
ବହୁ ଅଳଙ୍କାର ଘେନି ଇଷ୍ଟକୁ ପୂଜନ୍ତି ।
ଭୀଷ୍ମଙ୍କ ପାଶରେ ଯାଇ ପରବେଶ ହେଲେ
ଅଳଙ୍କାର ମାନ ନେଇ ବିନୟୀ ହୋଇଲେ ।
ପୌଷମାସ କୃଷ୍ଣପକ୍ଷ ଷଷ୍ଠୀ ତିଥି ଦିନ
ବୃହସ୍ପତି ବାର ମଘା ତାର ବିଦ୍ୟମାନ ।
ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
ଷଷ୍ଠୀ ପରେ ସପତମୀ ସେହି ରାତ୍ର ଭୋଗ ।
ପାଣ୍ଡବଙ୍କୁ ତହୁଁ ଘେନି ଦେବ ଚକ୍ରପାଣି
ସହଦେବ ସଙ୍ଗେ ବସି କରନ୍ତି ଭାଳେଣି ।
ଗୋବିନ୍ଦ ବୋଇଲେ ଭୀଷ୍ମ କହିଲେ ବିଶ୍ୱାସ
କାଲି ସମରକୁ ମୁହିଁ ତେଜିବି ଅବଶ୍ୟ ।
ଭୀଷ୍ମ ବୋଇଲେକ ମୋତେ ଆଜର ରଜନୀ
ମୋହ ପାଶକୁ ଆସିବ ପାଣ୍ଡବଙ୍କୁ ଘେନି ।
ଚାଲ ସହଦେବ ଯିବା ଭୀଷ୍ମଙ୍କ ପାଶକୁ
ଏକାନ୍ତେ ସେ ମୃତ୍ୟୁଭେଦ କହିବେ ଆମ୍ଭଙ୍କୁ ।
ସହଦେବ ବୋଲେ ଭୀଷ୍ମ ଭଣ୍ଡିଲେ ତୁମ୍ଭଙ୍କୁ
ମୃତ୍ୟୁଭେଦ ସେ କହିବେ ନ ଆସେ ମନକୁ ।
ଦୁର୍ଯ୍ୟୋଧନର ପାଶକୁ ଯାଆନ୍ତୁ କିରୀଟୀ
ମାଗନ୍ତୁ ତାକୁ ଅନର୍ଘ ମଣି ମୁକୁଟଟି ।

ସହଦେବ ବାକ୍ୟ ଶୁଣି କହିଲେ କେଶବ
ଅଭିଷେକ ମୁକୁଟ ସେ ପାର୍ଥେ କିପାଁ ଦେବ।
କରପତ୍ର ଯୋଡ଼ିଣ ଯେ ବୋଲେ ସବ୍ୟସାଚୀ
ମୁକୁଟ ନେବା ପ୍ରସ୍ତାବ ମୋର ପୂର୍ବୁ ଅଛି।
ମାନଗୋବିନ୍ଦ ରାଜାକୁ ଘୋଷଯାତ୍ରା ବେଳେ
ଚିତ୍ରସେନ ଗନ୍ଧର୍ବ ଯେ ବାନ୍ଧିନେଲା ବଳେ।
ବିବାଦୀ ହୋଇଲି ମୁହିଁ ସେହି ଚିତ୍ରସେନେ
ବନ୍ଧନରୁ ମୁକ୍ତ କଲି ରାଜା ଦୁର୍ଯ୍ୟୋଧନେ।
ରାଗେ ଦଶଯୁଣ ଫିଙ୍ଗିଦେଲା ଚିତ୍ରରଥ
ଆକାଶରୁ ବାନ୍ଧିଲି ମୁଁ ଶରେ ଶରେ ପଥ।
ସେହି ପଥେ ଦୁର୍ଯ୍ୟୋଧନ ଗଡ଼ି ଗଡ଼ି ଆସି
ଯୁଧିଷ୍ଠିଙ୍କ ପାଦତଳେ ପଡ଼ିଲା ଆଶ୍ୱାସି।
ବିନୟରେ ମୋର ପ୍ରତି ବହି ଅନୁରାଗ
ବୋଇଲା ହେପାର୍ଥ ତୁହିବର ମୋତେମାଗ।
ମୁଁ ବୋଇଲି ଦୁର୍ଯ୍ୟୋଧନ ହୋଇ ପରଣାମି
ଅନର୍ଘ ମଣି ମୁକୁଟ ଦିନେ ଦେବୁ ସ୍ୱାମି।
ଅନୁଗ୍ରହ କରିଣ ଯେ କହିଲାକ ସେହି
ମାଗିବୁ ମୁକୁଟ ଯେବେ ନିଶ୍ଚେ ମୁଁ ଦେବଇଁ।
ସେ କାଳେ ସତ୍ୟ କରିଛି ରାଜା ଦୁର୍ଯ୍ୟୋଧନ
ମହତ ବାକ୍ୟ ଲଙ୍ଘନ ହୋଇବ କେସନ।
ଅର୍ଜ୍ଜୁନର ମୁଖୁଁ ଏହା ଶୁଣି ନାରାୟଣ
ହୃଦୟରେ ଆନନ୍ଦିତ ହେଲେ ସେହିକ୍ଷଣ।
ପାର୍ଥକୃଷ୍ଣ ସହଦେବ ଏହି ତିନିଜଣ
ରାତ୍ରରେ ବିଜୟ କଲେ ହସ୍ତିନା ଭୁବନ।
ତହିଁ ପ୍ରବେଶନ୍ତେ ଶୋଭା ଦିଶେ ଅନୁପମ
ଦିଶେ ଯଥା ସ୍ରୋତସ୍ୱତୀ ତ୍ରିବେଣୀ ସଙ୍ଗମ।
ଆସ୍ଥାନରେ ବସିଅଛି ରାଜା ଧାର୍ତ୍ତରାଷ୍ଟ୍ରି
ସଭାରେ ବିଜୟ ଯାଇ କରିଲା କିରୀଟି।
ଦେଖିଣ ହରଷେ ବୋଲେ ରାଜା ଦୁର୍ଯ୍ୟୋଧନ
ବାତ୍ରରେ ଅର୍ଜ୍ଜୁନ କିପାଁ କଲୁ ଆଗମନ।
ପାର୍ଥ ପ୍ରଣମି ତାହାଙ୍କୁ ବୋଲଇ ଏସନ
ପଦାର୍ଥେକ ମାଗିବି ମୁଁ ଦେବ ଏହିକ୍ଷଣ।
ଦୁର୍ଯ୍ୟୋଧନ ବୋଲେ ମାଗ ଯାହାତୋର ଇଚ୍ଛା
ସତ୍ୟ ମୁହିଁ କହୁଅଛି ପୂରାଇବି ବାଞ୍ଛା।
କରପତ୍ର ଯୋଡ଼ିକରି ବୋଲେ ଫାଲଗୁନି
ଅନର୍ଘମୁକୁଟ ଦେବ ଆଜର ରଜନୀ।
ଶୁଣି ଉପହାସ କଲେ ଦୁଃଶା ଅଶ୍ୱଥାମା
ଦୁର୍ମୁଖ ଦୁର୍ବାଳ ଆଉ କର୍ଣ୍ଣ କୃପବ୍ରହ୍ମା।
ଶକୁନି ବୋଲଇ ତୁମ୍ଭେ ନଜାଣ ହୋକିଛି
ପୂର୍ବରୁ ଯେ ଦୁର୍ଯ୍ୟୋଧନ ସତ୍ୟ କରିଅଛି।
ଏ ସମୟେ ଶଲ୍ୟ ବୋଲେ ପୂର୍ବସତ୍ୟ ଥିଲେ
ଜୀବନ ଅସ୍ୱାର୍ଥ ହେବ ବିଚଳିତ ହେଲେ।
ଲକ୍ଷେ ରାଜା ମଧ୍ୟେ ଶ୍ରେଷ୍ଠ ଏ ମାନଗୋବିନ୍ଦ
ବାଚା ବିଚଳିତ ହେଲେ ଏହି ମଧ୍ୟେ ମନ୍ଦ।

ମାନଗୋବିନ୍ଦ ବୋଇଲା ଶୁଣରେ ଅର୍ଜ୍ଜୁନ
ତୁ ଗୁଣସାଗର ଭାଇ ମୋ ପ୍ରାଣ ସମାନ।
ପୂର୍ଣ୍ଣି ଦୁର୍ଯ୍ୟୋଧନ ବୋଲେ ଘୋଷଯାତ୍ରାବେଳେ
ଚିତ୍ରସେନ ମୋତେ ବାନ୍ଧି ନେଉଥିଲାବେଳେ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଉ ଶଲ୍ୟ ମହାରଥୀ
ସର୍ବେ ପକାଇଲେ କେହୁ ନୋହିଲେ ରଖନ୍ତା।
ସୋଦର ଛାଡ଼ିଲା ପାର୍ଥ ମୋହର ନିମିତ୍ତ
ତାହାର ଋଣ ଶୁଝି ନ ପାରିବି କିଞ୍ଚିତ।
ସେ ସମୟେ ଏହି ମୋର ଉପକାର କଲା
ଚିତ୍ରସେନଠାରୁ ମୋତେ ଛଡ଼ାଇ ଆଣିଲା।
ଭୟକରି ଚିତ୍ରସେନ ଛାଡ଼ିଲାକ ମୋତେ
କଲା ଉପକାର ଯେହୁ ନ ସୁମରେ ଚିତ୍ତେ।
ସମୟେକ ସେହି ପ୍ରାଣୀ ନରକେ ପଡ଼ଇ
ଏହି କଥା ଗୋଟି ଜାଣ ନିଶ୍ଚୟ ଅଟଇ।
ଯଦ୍ୟପି ଅର୍ଜ୍ଜୁନ ମୋତେ ମାଗିବ ମୋ ତୋଟି
ଏହିକ୍ଷଣି କହୁଛି ମୁଁ ତାହା ଦେବି କାଟି।
ପନଗ ନାରାୟଣ ସେ ମାନଚକ୍ରବର୍ତ୍ତୀ
ଅନର୍ଘ ମୁକୁଟ ଶିରୁ କାଢ଼ିଲା ଝଟତି।
ଏକଗୋଟି ମାଣିକ୍ୟ ଯେ ତହିଁ ଅଛି ଲାଗି
ଲାଗିଅଛି କୋଟିପାଦ ଲକ୍ଷ୍ମୀ ସଉଭାଗୀ।
ସେହି ମଣିତେଜେ ହୁଏ ଅନ୍ଧକାର ଦୂର
ତାହା ଘେନିଣ ଅର୍ଜ୍ଜୁନ ଚଳିଲା ସତ୍ୱର।
ସହଦେବ ବୋଲେ ଦେବ ଆଜର ପାହାନ୍ତି
ଭୀଷ୍ମଙ୍କ ତହିଁକି ଯିବା ନ ପାହୁଣୁ ରାତି।
ଉଭୟ ବଳକୁ ତହିଁ ନ ମାଡ଼ଇ ନିଦ
ସମର କଥାକୁ ଭାବି କରନ୍ତି ସେ ଖେଦ।
ରାତ୍ର ଥାଉଁ ଭୀଷ୍ମ ଦେବ ନିତ୍ୟକର୍ମ ସାରି
ଦେବତା ଘରେ ପଶିଣ ସ୍ୱଧର୍ମ ଆଚରି।
ଅନର୍ଘମଣି ମୁକୁଟ ପାର୍ଥ ଶିରେ ବାନ୍ଧି
ପ୍ରବେଶିଲା ଦେବଘର ଦ୍ୱାରେ ମହାଯୋଧୀ।
କୃଷ୍ଣ ସହଦେବ ପାର୍ଥ ପଛେ ରହିଥିଲେ
ନାସିକାରେ ସୂତାଦେଇ ଶ୍ରୀକୃଷ୍ଣ ଛିଙ୍କିଲେ।
ଲେଉଟିଣ ଭୀଷ୍ମଦେବ ଚାହାନ୍ତେ ଦ୍ୱାରକୁ
ମୁକୁଟ ଦେଖି ବୋଇଲେ ଲଭ ଦୀର୍ଘାୟୁକୁ।
ପୁନରପି ଆଉ ଥରେ ଛିଙ୍କନ୍ତେ ଶ୍ରୀପତି
ଶତ୍ରୁ ତୋର କ୍ଷୟ ଯାଉ ଭୁଞ୍ଜ ତୁ ବିଭୂତି।
ପୁଣ ଆଉ ଏକଥର ଛିକନ୍ତେ ଅଚ୍ୟୁତ
ଭୀଷ୍ମବୋଲେ ପଞ୍ଚରାଜ୍ୟ ହେଉତୋତେ ପ୍ରାପ୍ତ।
ଭୀଷ୍ମଙ୍କର ମୁଖୁଁ ଏହି ଦୃଢ଼ବାକ୍ୟ ଶୁଣି
ଅର୍ଜ୍ଜୁନ ସହ ଭିତରେ ଗଲେ ଚକ୍ରପାଣି।
ଶ୍ରୀକୃଷ୍ଣଙ୍କ ମୁଖ ଦେଖି ବୋଇଲେ ଗାଙ୍ଗେୟ
ମାୟାବୀ ପୁରୁଷ ତୁହି ଅଟୁ ଦେବରାୟ।
ମୁହିଁ ଅନର୍ଘ ମଣିର ମୁକୁଟ ଦେଖିଲି
ଦୁର୍ଯ୍ୟୋଧନ ପ୍ରାୟ ବୁଝି କଲ୍ୟାଣ ବାଞ୍ଛିଲି।

ଗୋବିନ୍ଦ ବୋଇଲେ ତୁମ୍ଭେ ମହତ ଧାର୍ମିକ
ନୋହିବ କି ସିଦ୍ଧ ତୁମ୍ଭେ କହିଲ ଯେ ବାକ୍ୟ ।
ଅର୍ଜୁନ କୃଷ୍ଣଙ୍କ ପାଶେ ଠିଆ ହୋଇଥିଲେ
ଭୀଷ୍ମଦେବଙ୍କୁ ଚାହିଁଣ ଏପରି ବୋଇଲେ ।
ବୋଇଲେ ପଞ୍ଚକଟକେ ହୁଅ ଏକ କ୍ଷତ୍ରୀ
ତୁମ୍ଭ କରେ ଶସ୍ତ୍ର ଥିଲେ ପାଣ୍ଡବେ କି ବର୍ତ୍ତି ।
ଭୀଷ୍ମ କହିଲେକ ତୋତେ କହୁଁ ପୂର୍ବକଥା
ଶାନ୍ତନୁ ଯେ ସୋମବଂଶେ ଥିଲେ ମହାରଥା ।
ଗଙ୍ଗାଠାରେ ବଢ଼ାଇଲେ ପ୍ରୀତି ସେହୁ କୂଟେ
ଈଶ୍ୱରଙ୍କୁ ନଦେଖି ସେଥିଲେ ମେରୁକ୍ରୋଟେ ।
ଗଙ୍ଗା ତହିଁ ଏହିପରି ସତ୍ୟ କରିଥିଲେ
ଗାଙ୍ଗୀ ବୋଇଲେ ରହିବିନାହିଁ ତୋରଆଳେ ।
ଅନେକ ଅବସ୍ଥା ତାଙ୍କୁ ଦେଲେ ସେ ଜାହ୍ନବୀ
ଭୃତ୍ୟ ପ୍ରାୟକ ଶାନ୍ତନୁ ଥାନ୍ତି ପ୍ରିୟ ଭାବି ।
ସପ୍ତପୁତ୍ର ମାରି ମାତା ଜଳେ ପକାଇଲେ
ତେବେ ସୁଦ୍ଧା ଶାନ୍ତନୁ ଯେ କିଛି ନ ବୋଇଲେ ।
ଅଷ୍ଟମରେ ମୁହିଁ ଜାତ ହେଲି ଯେତେବେଳେ
ଶାନ୍ତନୁ ଦେଖିଲେ ମୋତେ ଗଙ୍ଗାନେଲା କୋଳେ ।
ଦେଖି ରାଗ ସଂହରି ନ ପାରିଲେ ଶାନ୍ତନୁ
ବୋଇଲେ ଗୋଗାଙ୍ଗୀ ପୁତ୍ରବଧି ପାପଘେନୁ ।
ଧାତିକାରେ ଗଙ୍ଗା ମୋତେ ପକାଇ କୋଳରୁ
ରାଗେବୋଲେ ଜୀଉଁକିବା ଇଚ୍ଛା ହେଲେମରୁ ।
ମହତ ଲୋକର ବାକ୍ୟ ନ ହେବ ଅନ୍ୟଥା
ତେଣୁ ମୋର ଇଚ୍ଛାମୃତ୍ୟୁ ଶୁଣ ସାରକଥା ।
ଯାନ୍ତେ ଲୋଭେ କୋଳକରି ଧରନ୍ତେ ଗଙ୍ଗାଙ୍କୁ
ଗଙ୍ଗା ବୋଇଲେକ କିପାଁ ଛୁଇଁଲୁ ଆମ୍ଭଙ୍କୁ ।
ଯେତେକାଳ ଯାଏ କରି ନ ଥିଲୁ ଭର୍ତ୍ସନା
ମୁହିଁ ତୋର ଭାର୍ଯ୍ୟା ଥିଲି ତେତେକାଳ ସିନା ।
ଯେତେବେଳେ ଗାଙ୍ଗୀବୋଲି ବୋଲିବୁ ତୁମୋତେ
ବ୍ରତ ପୂରିବ ମୋହର କହିଅଛି ତୋତେ ।
ଆଉ ମୋତେକୋଳ ତୁହିକଲୁ କିସଅର୍ଥେ
ତୋର ଶିରଛେଦ ହେବ ଏହା ପୁତ୍ରହସ୍ତେ ।
ଏପରି ଶାପ ଦେଇଣ ଗଲେକ ଜାହ୍ନବୀ
ମୁହିଁ ସେପିତାଙ୍କ ପାଦେଥାଏ ସଦାସେବି ।
ବିଶ୍ୱାବସୁ ଗନ୍ଧର୍ବର ସୋମଦାସ ପୁତ୍ର
ଅବିବାହୀ ଚାରିଗୋଟି କନ୍ୟା ତା ଥିଲେତ ।
ଅମ୍ବା ଆଉ ଅମ୍ବାଳିକା ଅମ୍ବାଳୀ ଅମ୍ବିକା
ଆମ୍ଭଙ୍କୁ ବରଣ କଲେ ତାଙ୍କ ମଧ୍ୟୁ ଏକା ।
ବରବେଶେ ଗମନ୍ତେ ମୁଁ ବିବାହ ହେବାକୁ
ମୋତେଦେଖି ଶାନ୍ତନୁ ଯେକରିଲେ ଶୋକକୁ ।
ବୋଇଲେକ ଗଙ୍ଗା ଶାପ ଦେଇଅଛି ମୋତେ
ମୋର ଶିରଛେଦ ହେବ ତୋର ପୁତ୍ରହସ୍ତେ ।
ଆରେ ପାର୍ଥ ପିତାଙ୍କର ଏହି ବାକ୍ୟ ଶୁଣି
ବରବେଶ ପରିତ୍ୟାଗ କଲି ସେହିକ୍ଷଣି ।
ମୁହିଁ ବିଭା ହେଲେ ଯେବେ ପିତା ହେବେନାଶ
ସେ ବିଭାରେ ମୋର ଆଉ ପ୍ରୟୋଜନକିସ ।
ଏମନ୍ତ ବିଚାରି ମୁହିଁ ଦାରା ଉପେକ୍ଷିଲି
ବିଭା ନୋହିଲି ଶୃଙ୍ଗାର ମୁହିଁ ନ ଇଚ୍ଛିଲି ।
ଅମ୍ବାନାମରେ ଯେକନ୍ୟା ଥିଲା ମୋତେବରି
ବିବାହ ନୋହିଲେ ତାକୁ କେହି ମୋତେଡରି ।
ପୁଣି ମୋ ପାଶକୁ ଆସି ସେ ପରମାସତୀ
ବହୁ ବିନୟେ କହିଲା କରିଣ ଭକତି ।
ମୁହିଁ ତାହାକୁ କରନ୍ତେ ବହୁତର ତମ
ପ୍ରୟାଗେ ଝାସକୁ ଗଲା ଧରି ମୋର ନାମ ।
ଚାରିଭାଇ ସହ ତହିଁ ପର୍ଶୁରାମ ଥିଲେ
ସ୍ତିରୀହତ୍ୟା ହେବ ବୋଲି ନାସ୍ତି ସେ କରିଲେ ।
ସେନାରୀକି ଆଣି ମୋତେ ସମର୍ପନ୍ତେ ରାମ
ନାସ୍ତି କରନ୍ତେ ମୋ ତୁଲେ କଲେକ ସଂଗ୍ରାମ ।
ଅନେକ ସମର କଲେ ସେହି ଭାଇ ଚାରି
ଶତେବର୍ଷେ ଯୁଦ୍ଧକରି ଗଲେ ଅପସରି ।
ତହୁଁ ସେହି ଅମ୍ବା କନ୍ୟା ହୋଇଣ ନିରାଶ
ମୋତେ ଜିଣିବାକୁ ଦେଲା ପ୍ରୟାଗରେ ଝାସ ।
ବାଞ୍ଛା ସିଦ୍ଧ ତୀର୍ଥ କେବେ ସେ ଆନ ନୋହିଲା
ଦ୍ରୁପଦର ଘରେ ଯେବେ ପୁତ୍ରଯଜ୍ଞ ହେଲା ।
କଉରବ ନାଶିବାକୁ ଦ୍ରଉପଦୀ ଜନ୍ମ
ଶିଖଣ୍ଡୀ ନାମରେ ଅମ୍ବାକନ୍ୟା ଉତପନ୍ନ ।
ଆଜ ଯୁଦ୍ଧେ ଶିଖଣ୍ଡୀକି କରିବୁ ତୁ ଆଗ
ତାହାକୁ ଦେଖିଲେ ଶସ୍ତ୍ର ଛାଡ଼ିବି ମୁଁ ବେଗ ।
ଦ୍ରୋଣ ନାଶଯିବେ ଧୃଷ୍ଟଦ୍ୟୁମ୍ନର ହାତେ
କର୍ଣ୍ଣ ନାଶଯିବ ଜାଣ ତୋର ଶରାଘାତେ ।
ଯୁଧିଷ୍ଠିରଙ୍କ କୋପେ ନାଶଯିବେ ଗୁରୁଶଲ୍ୟ
ଭୀମସେନ ମର୍ଦ୍ଦିବ ଯେ କଉରବ ପଲ ।
ସହଦେବ ହସ୍ତେ ନାଶ ଯିବଟି ଶକୁନି
ନିଷ୍କଣ୍ଟକ ରାଜ୍ୟ ତୋତେ ଦେବ ଫାଲଗୁନି ।
ସାରଥିପଣେ ଶ୍ରୀକୃଷ୍ଣ ଯାକୁ କଲେ ରକ୍ଷା
ଆମ୍ଭମାନଙ୍କ ପ୍ରତିଜ୍ଞା ହେବ କାହିଁ ରକ୍ଷା ।
ମୁହିଁ ଜିଣି ନ ପାରିଲେ ଦଶଦିନ ମଧ୍ୟେ
ଅନ୍ୟ କ୍ଷତ୍ରୀ କେହୁ ଆଉ ଜିଣିବ କି ଯୁଦ୍ଧେ ।
ଏସନ ବେଳ ପ୍ରସର ହୋଇଲା ରଜନୀ
ଜଗତବନ୍ଦନ ନାଥ କଲେ ଶଙ୍ଖଧ୍ୱନି ।
ଜୟ ତୁ କେଶବ ଅବତାର ସର୍ବ ମୋକ୍ଷ
ତୁମ୍ଭର ନାମରେ ହୁଏ ମୁକତ ପ୍ରତ୍ୟକ୍ଷ ।
ନବଦୁର୍ବାଦଳ ପ୍ରାୟେ ତୁମ୍ଭର ଯେ ପିଣ୍ଡ
ଏକପାଦେ ଗୋପ୍ୟକଲ କୋଟିଏ ବ୍ରହ୍ମାଣ୍ଡ ।
ଗୋମୁଖ କେଶବଙ୍କର ଚରଣ ଚାରୋଟି
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଯେହିଟି ।
ସପତ ସମୁଦ୍ର ଅଟେ ତୁମ୍ଭର ଉଦର
ରସାତଳ ସୁତଳ ଯେ ତୁମ୍ଭର ପୟର ।

ଆକାଶ ଶିର ତୁମ୍ଭର ରୂପ ରୋମାବଳି
ବାରାନିଧି ଅଗ୍ନିକୋଣେ ଅଛ ଦୁଷ୍ଟେ ଦଳି।
ନମୋ ଗୋମୁଖୀ କେଶବ ନମୋ ମହାପ୍ରଭୁ
ପରମଗତି ଲଭିବି ତୋର ନାମ ଭାବୁଁ।
ତାହାଙ୍କର ପ୍ରିୟବତୀ ଅଟନ୍ତି କମଳା
କମଳପୁଷ୍ପ ଯାହାର ହୃଦେ ବନମାଳା।
ଶାରଳା ଦାସ କରଇ ବିନୟେ ଭକତି
ଗୋମୁଖୀ କେଶବପାଦେ ରହୁ ମୋରମତି।
ଶୁଣ ସାଧୁଜନେ ଏବେ ମୋହର କାହାଣୀ
ଶୂନ୍ୟେ ଶବଦ ଭେଦିଲି ନ ଶୁଣି ନ ଜାଣି।
ଝଙ୍କଡ଼ପୁର ବାସିନୀ ଶ୍ରୀଚଣ୍ଡୀ ଶାରଳା
ମୋହର କଣ୍ଠେ ଭୂଷଣ ସେହି ବନମାଳା।
ପରମଗତି ଦାୟିନୀ ଦେବୀ ପିଙ୍ଗଳାକ୍ଷୀ
ମୁହିଁ ତୋହର ବଚନ ହୃଦେ ଅଛି ରଖି।
ନିରିମଳ ଅକଳଙ୍କ ଯା ମୁଖପଦ୍ମଟି
ମୁହିଁ ତାହାଙ୍କୁ ବହୁତ ଭାଗ୍ୟେ ଅଛି ଭେଟି।
କୃପାଜଳ ବ୍ରହ୍ମାଙ୍କର କୁଳେ ଉତପନ
ପିତାଙ୍କ ବାକ୍ୟେ ନର୍ମଦା ସରସ୍ୱତୀ ନାମ।
ଗୋପ୍ୟାନ ଭାର୍ଗବୀ ବୋଲି ଚନ୍ଦ୍ରଭାଗା ନଦୀ
ଚିତ୍ରୋତ୍ପଳା ନାମେ ବହେ ଐଶାନ୍ୟରେଭେଦି।
ପ୍ରସନ୍ନେ ସାଧବୀ ଛନ୍ତି ତୁଷ୍ଟ ମୋହ ପ୍ରତି
ଯୋଗେ ଯୋଗେଶ୍ୱରୀ ମୋର ସେହିବରଦାତ୍ରି।
ନିର୍ମଳ ଭୁବନ ଜମ୍ବୁଦ୍ୱୀପର ଐଶାନ୍ୟେ
କନକାବତୀ ପାଟଣା ପର୍ଶୁରାମ ଗ୍ରାମେ।
କୁଶକେତୁର ଚରିତ ଯେଉଁ କୁଶସ୍ଥଳୀ
ଯୋଗୀବୃନ୍ଦ ଘେନି ସଦା ଯେହୁ କୁତୂହଳୀ।
କଳିକଳୁଷ ଧ୍ୱଂସିନୀ ଶ୍ରୀ ଶାରଳା ଚଣ୍ଡୀ
ବିପଦରେ ଡାକିଲେ ସେ ଶୀଘ୍ର ଦୁଃଖ ଖଣ୍ଡି।
ସେ ଦେବୀର ପଦ୍ମପାଦ ସଦା କରି ଧ୍ୟାନ
ଶାରଳାଦାସ ଭାରତ କରିଲା ରଚନ।

☆ ☆ ☆

## ଭୀଷ୍ମଙ୍କର ଶରଶଯ୍ୟା

ଏଥୁଅନନ୍ତରେ ପୁଣି ମନୁ ନରନାଥ
ଅଗସ୍ତିଙ୍କ ଶ୍ରୀ ଚରଣେ କରି ପ୍ରଣିପାତ।
ପୁଛାକଲେ କହ ମୋତେ ଆହେ ତପଚାରୀ
ସମର ବିଧାନ ପୁଣି ହେଲା କେଉଁପରି।
ଅଗସ୍ତି କହିଲେ ଶୁଣ ମନୁ ନରପତି
ପାଣ୍ଡବଙ୍କୁ ମୃତ୍ୟୁଭେଦ ଦେଲେ ଭୀଷ୍ମ ରଥୀ।
ସଞ୍ଜୟ କହିଲେ ଶୁଣ ରାଜା ଧୃତରାଷ୍ଟ୍ର
ଭୀଷ୍ମଙ୍କର ମୃତ୍ୟୁଦିନ ହୋଇଲା ନିକଟ।
ଭୀଷ୍ମଦୋଷ ନାହିଁତୋର ପୁତ୍ର ଅଟେମନ୍ଦ
ପାର୍ଥଙ୍କୁ ମୁକୁଟ ଦେଲା ନ ଜାଣିଣ ଛନ୍ଦ।
ସେ ମୁକୁଟ ବାନ୍ଧି ବୀର ଚଳେ ଧନଞ୍ଜୟ
ଶ୍ରୀକୃଷ୍ଣଙ୍କ ଛନ୍ଦକଥା ଶୁଣ କୁରୁରାୟ।
ମୁକୁଟ ମସ୍ତକେ ବାନ୍ଧି କୂଟେ ତାଙ୍କ ଦେହ
ଦେବଘରେ ଭେଟିଲା ଯେ ଭୀଷ୍ମ ଧନଞ୍ଜୟ।
ବହୁରତ୍ନ ଅଳଙ୍କାର ପାର୍ଥଦେହେ ମଣ୍ଡି
ଦଣ୍ଡ ପ୍ରଣାମ ହୋଇଲାୟ ବାହାର ଏଗୁଣ୍ଡି।
ମୁକୁଟ ଦେଖିଣ ଦୁର୍ଯ୍ୟୋଧନ ପ୍ରାୟ ମଣି
ଏକାଳେ ଛିଙ୍କିଲେ କୂଟେ ଦେବ ଚକ୍ରପାଣି।
ଭୀଷ୍ମ ବୋଇଲେ ଆମ୍ଭର ଆୟୁ ଘେନି ବର୍ତ୍ତ
ଶତ୍ରୁ ମାରି ପଞ୍ଚରାଜ୍ୟେ ହୁଅ ଏକଛତ୍ର।
ପଛରେ ଜାଣିଲେ ଯହୁଁ ପାଣ୍ଡବ କିରୀଟି
ଭେଦ କରିଣ ବୋଇଲେ ପ୍ରାପ୍ତ ହେଉ ସୃଷ୍ଟି।
କୃଷ୍ଣଙ୍କର କୂଟ ଯହୁଁ ପଛକୁ ଜାଣିଲେ
ନିଜ ମୃତ୍ୟୁଭେଦ ତହୁଁ ତାହାଙ୍କୁ କହିଲେ।
ଆଜର ଯୁଦ୍ଧେ ଶିଖଣ୍ଡୀ ରଥୀ ଯେ ହୋଇବ
ତାହାକୁ ଦେଖି ଛାଡ଼ିବେ ଶସ୍ତ୍ର ଭୀଷ୍ମ ଦେବ।
ଭୀଷ୍ମ ନାଶଗଲେ ଜାଣ ଯୁଦ୍ଧହିଁ ସରିଲା
ସକଳ ଭାବନା ଏବେ ନିଷ୍ଫଳ ହୋଇଲା।
ପୌଷ କୃଷ୍ଣ ସପ୍ତମୀ ଦଶମ ଦିନ ଯୁଦ୍ଧ
ଶୁକ୍ରବାର ପୂର୍ବାଫାଲଗୁନୀ ଋକ୍ଷ ଶୁଦ୍ଧ।
ଥାଟ ରହେ ସରସ୍ୱତୀ ସରିତର କୂଳ
ପ୍ରଭାତେ ସଜ ହୋଇଲେ ଉଭୟଙ୍କ ବଳ।
ରଥ ଗଜ ଅଶ୍ୱ ଆଉ ଦୁହିଙ୍କ ସଇନି
ମୁଖରାବ ଶବଦରେ କମ୍ପାନ୍ତି ମେଦିନୀ।
ଆକାଶରୁ ବିଜେ କଲେ ଦେବ ବ୍ରହ୍ମମୁନି
ସାମବେଦ ପଢ଼ନ୍ତି ଯେ ବୀଣା କରେ ଘେନି।
ନାରଦେ ଦେଖି ବିଜୟ କଲେ କୁରୁରାଜା
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ କଲେ ପାଦପୂଜା।
ନବମ ଦିବସ ପରେ ସମରର ଶେଷ
ଭୀଷ୍ମ ସମ୍ଭାଷିଲେ ଯାଇ ନାରଦଙ୍କ ପାଶ।
ନାରଦ ହସିଲେ ରୂପ ଭୀଷ୍ମଙ୍କର ଚାହିଁ
ଶେଷକାଳ ପ୍ରାଣୀଙ୍କୁ ଯେ ଗୋଚର ନୁହଇ।
ତୁହି ଏହା ଜାଣୁଟି କି ହେ ମାନଗୋବିନ୍ଦ
ଆଜି ରଣେ ପଡ଼ିବ ହେ ଭୀଷ୍ମଙ୍କୁ ପ୍ରମାଦ।
ଏହା ଆଶା ତ୍ୟାଗ କର ତୁହି ମହାରାଜା
ଭୀଷ୍ମଙ୍କୁ ବୋଲ ତୁଆଜି ସମରକୁ ନ ଯା।
ଭାରତଯୁଦ୍ଧ ଦେଖୁ ଏ ବେଳେ ଥାଉ ବର୍ତ୍ତି
କୁଳର ଶ୍ରେଷ୍ଠ ଅଟନ୍ତି ଭୀଷ୍ମ ମହାରଥୀ।

ଏତେକ କହି ନାରଦ ହେଲେ ଅନ୍ତର୍ଦ୍ଧାନ
ଭୀଷ୍ମଙ୍କ ପାଶକୁ ବିଜେ କଲା ଦୁର୍ଯ୍ୟୋଧନ ।
ଭୋ ତାତ ତୁମ୍ଭର ଆଜି ଯୋଗ ଅଛି ମନ୍ଦ
ତୁମ୍ଭର ପଡ଼ିବ ବିଘ୍ନ କହିଲେ ନାରଦ ।
କହନ୍ତି ଗାଙ୍ଗେୟ ତୁମ୍ଭେ ବାବୁ ଜ୍ଞାନବାନ
କାହାର ବଳେ ମେଣ୍ଟିବ କର୍ମର ଘଟନ ।
ମାତାରଜ ପିତାବୀର୍ଯ୍ୟ ମିଶେ ଯେତେବେଳେ
ଧାତା ଯାହା ଲେଖିଥାଇ ଜୀବର କପାଳେ ।
କେ ଆନ କରିବ ସେହି କର୍ମର ଲିଖନ
ଯାହା କହିଲେ ନାରଦ ମହାତପୋଧନ ।
ଏଥକୁ ସନ୍ତାପ ତୁ ନ କର କୁରୁବୀର
ହାରିବା ଜିଣିବା ଅଟେ ସମର ବେଭାର ।
ଏତେ କହି ଜୟଶଙ୍ଖ ଗାଙ୍ଗେୟ ବୋଇଲେ
ବିଘ୍ନରାଜ ସୁମରିଣ ରଥେ ବିଜେ କଲେ ।
ମନ୍ମଥ ସାରଥୀ ତହୁଁ ବାହିଲା ତୁରଙ୍ଗ
ଚଳିଗଲେ ଯୋଦ୍ଧାମାନେ ଭୀଷ୍ମଙ୍କର ସଙ୍ଗ ।
ପୂର୍ବଦିଗରେ ପାଣ୍ଡବେ ପଶ୍ଚିମେ କୌରବେ
ସାଜନ୍ତି ଯେ ନନ୍ଦିଘୋଷ ରଥ ବାସୁଦେବେ ।
ଗୋବିନ୍ଦ ବୋଇଲେ ଶୁଣ ବୀର ଫାଲଗୁନୀ
ଶିଖଣ୍ଡୀକୁ ସେନାପତି କରି ଆସ ଘେନି ।
ଅର୍ଜ୍ଜୁନ ବୋଇଲେ ଦେବ ଭୀଷ୍ମଙ୍କ ନିମନ୍ତେ
ଶିଖଣ୍ଡୀ ଶିରେ ମୁକୁଟ ବାନ୍ଧିବି କେମନ୍ତେ ।
ଯାତ୍ରାକାଳେ ଅଯାତ୍ରିକ କେବେହେଁ ନ ବରି
ଅଥବା ଜିଣିବା ରଣେ ହାରିଲେହେଁ ହାରି ।
ନିସତ ହୋଇଣ ଯେହୁ କରେ ନୀଚକାର୍ଯ୍ୟ
ତାଙ୍କ ଜୀବନ ସାର୍ଥକ ନୁହେଁ ଦେବରାଜ ।
ସ୍ୱାମୀ କୂଟ କପଟରେ ଯେ କରେ ସଂଗ୍ରାମ
କ୍ଷତ୍ରିୟ କୁଳେ ଦୂଷଣ ବୁଡ଼େ ସର୍ବଧର୍ମ ।
ଅନେକ ମଣାଇ କରି କହନ୍ତି ଶ୍ରୀପତି
ତଥାପି ମଙ୍ଗିଲା ନାହିଁ ପାର୍ଥ ମହାଯତି ।
ସହଦେବକୁ ହକାରି ବୋଇଲେ ଶ୍ରୀଧର
ମୁକୁଟ ବାନ୍ଧି ତୁ ନେଇ ଶିଖଣ୍ଡୀ ଶିରର ।
ଭୀଷ୍ମ ଅର୍ଜ୍ଜୁନ ସମର ଅଟେ ମହାଘୋର
ଶିଖଣ୍ଡୀକୁ ସେନାପତି କଲେ ଯୁଧିଷ୍ଠିର ।
ବହୁରତ୍ନ ଅଳଙ୍କାର ଦେଲେ ତାର କାୟେ
ଖେଚର ପ୍ରାୟେକଦେଲେ ରଥ ଯେଗୋଟିଏ ।
କୃଷ୍ଣବର୍ଣ୍ଣର ସଦୃଶେ ହୟବର ଚାରି
ଦେବଭୁବନେ ପାରନ୍ତି ଯାଇ ବେଗକରି ।
ସାତ୍ୟକି ସାରଥୀ ହେଲା ଶିଖଣ୍ଡୀ ରଥରେ
ବାହଇ ଯେ ତୁରଙ୍ଗମ ପବନହୁଁ ଖରେ ।
ସୂର୍ଯ୍ୟମଣ୍ଡଳ ସଦୃଶେ ଶିଖଣ୍ଡୀର ରଥ
ଚଢ଼ିଣ ଯାଆନ୍ତେ ଶଲ୍ୟ ଓଗାଳିଲା ପଥ ।
ସମରେ ଶିଖଣ୍ଡୀ ବୀର ଅଟେ ମହାଯୋଧୀ
କ୍ଷତ୍ରୀବର ସୁନ୍ଦର ସେ ଯୁଦ୍ଧରେ ପ୍ରସିଦ୍ଧି ।
ପରବତ ଭେଦିଯାଏ ସେ ଶର ବିନ୍ଧନ୍ତେ
କେ ତାର ଶର ସହିବ ନରଜନ୍ମ ମାତ୍ରେ ।
ବହୁତ ସମର କଲା ରାଗେ ଗୁରୁଶଲ୍ୟ
ମହାଭାରତ ଯୁଦ୍ଧେ ସେ ଅଟେ ମହାମଲ୍ଲ ।
ନିଘାତ ଶବଦ ଜାଣି ତାର ଗୁଣ ନାଦ
ଉଭୟ ବଳ ମଧ୍ୟରେ ହେଲା ମହାଯୁଦ୍ଧ ।
ସମର କରନ୍ତି ଭୀଷ୍ମ ଅର୍ଜ୍ଜୁନର ତୁଲେ
ଶର ବିନ୍ଧିଲେ ଆଦିତ୍ୟ ଅଦୃଶ୍ୟ ହୋଇଲେ ।
ନିମିଷକେ ଶତ ଶତ ଶରମାନ ବିନ୍ଧି
ପ୍ରତିଶରେ ଅର୍ଜ୍ଜୁନ ତା ସମସ୍ତ ନିରୋଧି ।
ଦିଗ କମ୍ପିତ ହୋଇଲା ଶସ୍ତ୍ରର ଗହଳେ
ଆକାଶେ କମ୍ପିତ ହେଲେ ସର୍ବ ଦିଗପାଳେ ।
ଶର ଆଚ୍ଛନ୍ନରେ ଦିଶେ ଗଗନ ଅନ୍ଧାର
ଆକାଶରେ ତେଜ ନ୍ୟୂନ ହେଲା ରବିଙ୍କର ।
ଯେସନେକ ବୈଶ୍ୱାନର ଦହେ ତୃଣରାଶି
ତେସନେ ଅର୍ଜ୍ଜୁନ ଶର ଭୀଷ୍ମ ପରେ ବର୍ଷି ।
ଅତିବେଗେ ଶରମାନ ବିନ୍ଧେ ଅନର୍ଯ୍ୟାପ
ଅନ୍ୟଯୋଦ୍ଧା ପଳାଇଲେ ଦେଖିତାଙ୍କ କୋପ ।
କୋପରେ ଗାଙ୍ଗେୟ ହେଲେ ସମରେ ବିମୁଖ
ପଡ଼ିଲା ଯୋଦ୍ଧାଙ୍କୁ ତହିଁ ଯୁଦ୍ଧେ ମହାଦୁଃଖ ।
ଦେହ ଅସାଷ୍ଟମେ ଗଙ୍ଗାନନ୍ଦନ ଯେ ରାଗେ
ରୁଦ୍ରଶରକୁ କାଢ଼ିଣ ପେଷିଲେ ଯେ ବେଗେ ।
ବିକଟ ଦଶନ ଘୋର କରାଳ ସ୍ୱରୂପୀ
ବିଜେ କର୍ଣ୍ଣକଟାରକୁ ଘେନି ପାଦେ କ୍ଷେପି ।
ବିରାଜଇ ଶସ୍ତ୍ର ଶୁଦ୍ଧ ସ୍ଫଟିକକୁ ଜିଣି
ଜଳ ସ୍ଫଟିକରେ ଯେହ୍ନେ ଦିଶେ ଅର୍କମଣି ।
ମହୀ କମ୍ପମାନ ହେଲା ସେ ଅସ୍ତ୍ର ଆସନ୍ତେ
ଯୋଦ୍ଧାଏ ଲୁଚିଲେ ଯାଇ ନିଜ ନିଜ ରଥେ ।
ଶ୍ରୀକୃଷ୍ଣ କହିଲେ ଚାହିଁ ଅର୍ଜ୍ଜୁନର ମୁଖ
ଭୈରବାସ୍ତ୍ର କଲେ ଭୀଷ୍ମ ପାରିଲେ ତୁ ରଖ ।
ତୁହି ଯେବେ ସମ୍ଭାଳି ନ ପାରିବୁରେ ପାର୍ଥ
ହନୁକୁ କହିବା ସେହି ଗୋପ୍ୟ କରୁ ରଥ ।
ନାରାୟଣଙ୍କ ବଚନେ ବୀର ଫାଲଗୁନୀ
ଅସ୍ତି ନାସ୍ତି ନ କହିଣ ହେଲା ସେହି ତୁନି ।
ଗୋବିନ୍ଦ କହିଲେ ଶୁଣ ବୀର ହନୁମାନ
ଭୈରବ ଅସ୍ତ୍ର ଆସଇ ଘୋଟିଣ ଗଗନ ।

ପୃଥିବୀ ଘୋଟିଲାଟି ହେ ମହା ବ୍ରହ୍ମତେଜ
ଏହିକ୍ଷଣି ହୋଇଯିବ ସକଳ ଦହିଯ୍ୟ ।
ଏହାର ପ୍ରତିଅସ୍ତ୍ର ନ ଜାଣେ ସବ୍ୟସାଚି
ତୋର ବୁଦ୍ଧିବଳେ ଏଥୁ ବେଳେ ଯିବା ବଞ୍ଚି ।
ଅଞ୍ଜନାନନ୍ଦନ ଅଙ୍ଗେ ବିଷ୍ଣୁ ତେଜ ବ୍ୟାପୀ
ଭୁଜେ ଥାଇ ନନ୍ଦିଘୋଷ ପାତାଳକୁ ଚାପି ।
କଣୟ ଗିରି ସମାନ ଯେଉଁ ନନ୍ଦିଘୋଷ
ମାରୁତି ଚାପନ୍ତେ ରଥ ହୋଇଲା ଅଦୃଶ୍ୟ ।
ନନ୍ଦିଘୋଷ ନ ପାଇଲା ଯହୁଁ ରୁଦ୍ରଶର
ଲେଉଟି ଶୂନ୍ୟରେ ଲାଜେ ହୋଇ ସରସର ।
ଧାତିକାରେ ହନୁମନ୍ତ ରଥକୁ ତୋଳିଲା
ପାତାଳ ପୁରରୁ ରଥ ବେଗରେ ଉଠିଲା ।
ରୁଦ୍ରଶର ପେଷି ଭୀଷ୍ମ ନିଶ୍ଚିନ୍ତ ହୋଇଛି
ଶସ୍ତ୍ରକୁ ଲୟ କରିଣ ପାଣ୍ଡବ ଚାହିଁଛି ।
ଡାକନ୍ତି ଭୀଷ୍ମ ପାର୍ଥରେ ଜଗ ଆଜ ରାତି
ଆଜି ବାଣମୁଖୁଁ ତୁମ୍ଭେ ଯିବ କିରେ ବର୍ତ୍ତି ।
ଏକଲୟେ ଭୀଷ୍ମ ସ୍ଥିରକରି ଚାହିଁଛନ୍ତି
କୃଷ୍ଣ ଆଶ୍ରିତେ ପାଣ୍ଡବେ ସର୍ବେ ଗଲେ ବର୍ତ୍ତି ।
ଏସନକ ସମୟରେ ପାର୍ଥ ଧାତିକାରେ
ହାବୋଡ଼ା ଶରକୁ କାଢ଼ି ବିନ୍ଧିଲେ କୋପରେ ।
ଭୀଷ୍ମଙ୍କ ରଥ ସାରଥି ସର୍ବ ହେଲା ଚୂନା
ଧନୁ ଛିଡ଼ି ଭୀଷ୍ମଙ୍କର ଭେଦିଲାକ ସେହ୍ନା ।
ହାବୋଡ଼ା ଶରରେ ଭୀଷ୍ମ ହୋଇଲେ ଉତ୍ତାନ
ଦେହରେ ଭେଦନ୍ତେ କ୍ଷଣେହେଲେ ଅଚେତନ ।
ଧାତିକାରେ ଚେତି ଭୀଷ୍ମ ଘେନିଲେ ଭୂଷଣ୍ଡୀ
ଦେଖିଲେ ରଥରେ ଚଢ଼ି ଆଗରେ ଶିଖଣ୍ଡୀ ।
ଯାତ୍ରାକାଳେ ଅଯାତ୍ରିକ ମୁଖ ନିରୀକ୍ଷିଲେ
କାର୍ଯ୍ୟ ନାଶଯାଏ ଅନୁକୂଳ କରିଗଲେ ।
ଶିଖଣ୍ଡୀକି ଦେଖି ଭୀଷ୍ମ ଏହା ବିଚାରିଣ
ଧନୁ ଶସ୍ତ୍ର ତ୍ୟାଗ କଲେ ହସ୍ତୁ ସେହିକ୍ଷଣ ।
ଏକାଳେ କଣ୍ଟକ ଶର ବିନ୍ଧିଲା ଶିଖଣ୍ଡୀ
ମଦନର ଅବତାରେ ଭୀଷ୍ମ ଅଙ୍ଗ ମଣ୍ଡି ।
ମଦନଶର ଭେଦିଲା ଯହୁଁ ଭୀଷ୍ମ ବପୁ
ଅମ୍ବା ଯେ ଶିଖଣ୍ଡୀରୂପେ ତାର ହେଲା ରିପୁ ।
ଭୀଷ୍ମଙ୍କ ଶରୀରେ ଯେତେ ଥିଲେ ରୋମାବଳୀ
ଶିଖଣ୍ଡୀର ଶରାଘାତେ ତହୁଁ ରେତ ଗଳି ।
ଯଷ୍ଟିର ଆଘାତ ପ୍ରାପ୍ତେ ଯେହ୍ନେ ହୁଏ ସର୍ପ
ଶିଖଣ୍ଡୀର ଶରେ ଭୀଷ୍ମ ହେଲେ ସେହିରୂପ ।
ହୃଦୟ ପଞ୍ଜର କର ଚରଣ ଅଙ୍ଗୁଷ୍ଠି
ଅଙ୍ଗ ଶିଶୁମୁନା ଘେନି ସର୍ବଦ୍ୱାର ଫିଟି ।

ଘୋଟିବାରୁ ମନସିଜ ମୋହେ ଚନ୍ଦ୍ରକଳା
ତୁଟିଲାକ ବଳଦର୍ପ ଭୀଷ୍ମ ଯେ ଭେଦଲା ।
ଏସନକ ଶରୀରକୁ ସେହି ଦେଲା ଦୁଃଖ
ମନସିଜ ଶରେ ଭୀଷ୍ମ ହୋଇଲେ ବିମୁଖ ।
ଦେହ ପ୍ରାଭବୀ ହୋଇଲେ ଖସିବାରୁ ରେତ
ଅସ୍ୱାଭାବିକ ମତରୁ ହେଲା ଏହିମତ ।
ନବସସ୍ର ବର୍ଷ ଯେଉଁ ଅସ୍ଖଳିତ ହୃଦୁ
ଅମ୍ବାର ଦର୍ଶନମାତ୍ରେ ଖସିଲା ସେ ବିନ୍ଦୁ ।
ଭୀଷ୍ମଙ୍କର ଅସାଷ୍ଟମେ ଭାଜିଲେ ସଇନି
ସମର ରହୁ ବୋଲିଣ ଶୁଭିଲାକ ଧ୍ୱନି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଯଷ୍ଟି ହରାଇଣ ଅନ୍ଧ ହୁଏ ଯେଉଁମତି ।
କଉରବ ବଳ ସର୍ବେ ସେହିପରି ହେଲେ
ବିଧବା ସ୍ତିରୀ ପରାୟେ କାନ୍ଦିଣ ବୁଲିଲେ ।
ଧାମନ୍ତେ ଯେ କଉରବେ ଭରଷ୍ଟ ସନ୍ନିଧାନେ
ଦେଖିଲେ ଗାଙ୍ଗେୟ ଛନ୍ତି ବିରସ ବଦନେ ।
ଭୀଷ୍ମଙ୍କ ଅବସ୍ଥା ହାଦେ ଦେଖି ଧାର୍ତ୍ତରାଷ୍ଟ୍ର
ଶୋକରେ ହସ୍ତ ତାଡ଼ିଲା ଆପଣା ଲଲାଟ ।
ଆହେ ପିତାମହ ଯାମଦଗ୍ନ୍ୟ ପର୍ଶୁରାମ
ଯାହାକୁ ହାରିଲେ କରି ଦୁଃସହ ସଂଗ୍ରାମ ।
ଯାହାର ଧନୁ ଧରନ୍ତେ କମ୍ପମାନ ସ୍କନ୍ଦ
ତୋତେ କିସ ବୋଲିବି ଯେ ମୋର କର୍ମ ମନ୍ଦ ।
ଆଗହୁଁ ମୋତେ ଯଦ୍ୟପି କହୁଥାନ୍ତୁ ଏହା
ପାଣ୍ଡବେ ନୁହନ୍ତି ବାଦୀ ତୋହର ଅସାହା ।
ଭୀଷ୍ମଙ୍କୁ କୋଳ କରିଲା ମାନଚକ୍ରବର୍ତ୍ତୀ
କର୍ଣ୍ଣ ଦୁଃଶା ଶକୁନିଯେ ସମନ୍ତେ ରୋଦନ୍ତି ।
ସଞ୍ଜୟ ବିଦୁର ତୁଲେ କହେ ଧୃତରାଷ୍ଟ୍ର
ଏବେଳେ ପୁଅକୁ ମୋର ଦେଲୁ ଏତେ କଷ୍ଟ ।
ଏହା ସଂକ୍ଷେପି କିପାଁ ନ କହିଲୁ ଆଗହୁଁ
ଭବିଷ୍ୟତ ଜ୍ଞାତା ବୋଲି ଜାଣିବି ମୁଁ କାହୁଁ ।
ବୋଇଲୁ ସମରେ କୃଷ୍ଣ ଅରଜୁନ ମାରି
ପଞ୍ଚରାଜ୍ୟେ କରିବି ତୋ ପୁତ୍ର ଦଣ୍ଡଧାରୀ ।
ମୁହିଁ ତୋର ବଚନକୁ ଆଶାକଲି ପିତା
ମହତଙ୍କ ବାକ୍ୟ ଏଣେ ହୋଇଣ ଅନ୍ୟଥା ।
କୌରବ ବଳଙ୍କର ତୁ ପରମ ଔଷଧି
ତୁଥାଉଁ ନଗଲା ମୋର ଏହିକଷ୍ଟ ବ୍ୟାଧି ।
ଭୂରିଶ୍ରବା କୋଳକରି ଧଇଲେ ଭୀଷ୍ମଙ୍କୁ
ହୃଦେ ଭିଡ଼ି ସ୍ନେହଭରେ ଆବୋରିଲେ ତାଙ୍କୁ ।
ବାବୁ ଏସନ ଚରିତ ଆଗହୁଁ ତୁ ଜାଣୁ
କୌରବ ଥାଟେ ତୁ କିପାଁ ପ୍ରତିଜ୍ଞା ବଖାଣୁ ।

ଦ୍ରୁପଦ ସୁତ ଶିଖଣ୍ଡୀ ହେଲା ରିପୁ ତୋର
ତୃଣ ପ୍ରାୟେ କାଟିଥାନ୍ତି ଶରୀରକୁ ତାର ।
ଭୂରିଶ୍ରବା ବୋଲେ ଏବେ ଅକର୍ତ୍ତବ୍ୟ ଅଙ୍ଗ
ଶଶକର ପରାକ୍ରମେ ନାଶଗଲା ସିଂହ ।
ଏଡ଼େ ଆଡ଼ମ୍ବରେ ଯୁଦ୍ଧ କିପାଁ ଆରମ୍ଭିଲୁ
ବୃକ୍ଷରେ ଚଢ଼ାଇ ଦେଇ ମୂଳ କାଟିଦେଲୁ ।
ଏବେ ଆଜ୍ଞାଦିଅ ମୁହିଁ ମାରିବି ଶିଖଣ୍ଡୀ
ତିରଣ ପ୍ରମାଣେ ମାଂସ କରି ଖଣ୍ଡି ଖଣ୍ଡି ।
କହୁଁ କହୁଁ ଭୂରିଶ୍ରବା ହେଲା ମହାକ୍ରୋଧୀ
ଚକ୍ଷୁ ରକ୍ତବର୍ଣ୍ଣ ହେଲା ନ ଦିଶିଲା ବୁଦ୍ଧି ।
ଭୀଷ୍ମ ବୋଇଲେ ଶିଖଣ୍ଡୀ କାମିନୀ ଅଟଇ
ସେହେତୁ ତାହାକୁ ଯୁଦ୍ଧେ ନମାରିଲି ମୁହିଁ ।
ମୁହିଁ ବିନାଶ ଲଭିଲି ଶିଖଣ୍ଡୀ ସମରୁ
ଧୃଷ୍ଟଦ୍ୟୁମ୍ନ ହାତେ ନାଶଯିବେ ଦ୍ରୋଣ ଗୁରୁ ।
ଧୃତରାଷ୍ଟ୍ର ଶତ ପୁତ୍ର ଭୀମ ସଂହାରିବ
ଅର୍ଜ୍ଜୁନର ଶରାଘାତେ କର୍ଣ୍ଣ ନାଶଯିବ ।
ଶଲ୍ୟକୁ ନାଶିବେ ଯୁଦ୍ଧେ ରାଜା ଯୁଧିଷ୍ଠିର
ଶକୁନି ନାଶଯିବ ସେ ସହଦେବ କର ।
କୃପ ଅଶ୍ୱଥାମା ଦୁହେଁ ଯୁଦ୍ଧେ ଅବରଣି
ଭୂରିଶ୍ରବା ସୋମଦତ୍ତ ଯାକୁ କେହୁ ଗଣି ।
ତୁ ବାବୁ ମାନଗୋବିନ୍ଦ ଏବେ କର ବୁଦ୍ଧି
ଏକା ଶକୁନି କଥାରେ ହେଉ କିପାଁ ଧନ୍ଦି ।
ଆରେ ଦୁର୍ଯ୍ୟୋଧନ ମୋର ପିତା ଶାୟନ୍ତନୁ
ମାତା ଅଟଇ ଜାହ୍ନବୀ ତୁହି ଏହା ଜାଣୁ ।
ମୋହର ଯେ ଇଚ୍ଛା ମୃତ୍ୟୁ ଅଟଇ ଏବିଧି
ଜିଣିବାକୁ ପାଣ୍ଡବେ ଯେମୋତେ କଲେବୁଦ୍ଧି ।
ଆଉକି ତୋତେ ପ୍ରାପତ ହୋଇବ ସମ୍ପଦ
ଏହି କଥାଗୋଟି ବାବୁ ଛାଡ଼ ତୋର ହୃଦ ।
ବଦନ୍ତି ଗାଙ୍ଗେୟ ଶୁଣ ହେ ମାନଗୋବିନ୍ଦ
ପାଣ୍ଡବଙ୍କ ତୁଲେ ଆଉ ନ କର ତୁ ଦ୍ୱନ୍ଦ୍ୱ ।
ଛାଡ଼ିଦଅ ମନୁ ତୋର ଲୋଭ ମୋହ ରାଗ
ଯୁକତେ ପାଣ୍ଡବଙ୍କର ଅଛି ଏଥେଁ ଭାଗ ।
ମାନଗୋବିନ୍ଦ ବୋଇଲା ନ କହ ଏମନ୍ତେ
ସୀମାଏ ନ ଦେବି ଜୀବ ଥିବା ପରିଯନ୍ତେ ।
ଶୁଣିଣ ମଉନବ୍ରତ ହୋଇଲେ ଗାଙ୍ଗେୟ
ପ୍ରତିଜ୍ଞା କରି ଉତ୍ତର ଦେଲାକ ରାଧେୟ ।
କର୍ଣ୍ଣ ବୋଇଲାକ ଭୀଷ୍ମ କହିଲେ ଏ ବାଣୀ
ଶରୀର ମୋର କମ୍ପୁଛି ସେହି କଥା ଶୁଣି ।
ବଞ୍ଚିଲୁ କୌରବ ଅନେ ପାଣ୍ଡବେ ତୋ ପ୍ରୀତି
ମୃତ୍ୟୁଭେଦ କହିଲୁ ତୁ ଆଜର ପାହାନ୍ତି ।
ତୋତେ ଆଶା କରି ଆମ୍ଭେ ଅପସରି ଥିଲୁ
ଅନେକ ସୈନ୍ୟଙ୍କୁ ତୁହି ବୃଥା ମରାଇଲୁ ।
ଲାଘବ ଯୁଦ୍ଧ ସରିଲା ଜାଣ ଆଜଠାରୁ
ଏବେ ଦୁର୍ଯ୍ୟୋଧନ ହେବ ପଞ୍ଚରାଜ୍ୟେ ମେରୁ ।
କର୍ଣ୍ଣ ଦ୍ରୋଣ ଅଶ୍ୱଥାମା କୃପ ଶଲ୍ୟ ଥାନ୍ତେ
ତୁହି ଦେଖିବୁ ପାଣ୍ଡବେ ବର୍ତ୍ତିବେ କେମନ୍ତେ ।
ଭୀଷ୍ମ ବୋଇଲେ ଛାଡ଼ିଲୁ ଆମ୍ଭେ ସେ ସମର
ଯୁଦ୍ଧ ଶେଷ ଦେଖିବୁ ଯେ ରହି ଏହିଠାର ।
ପୁଣି ବୋଇଲେ ବାବୁ ରେ ଶୁଣ କୁରୁରାଜା
ଏହିଠାରେ ମୋର ପାଇଁ କରିଦିଅ ଶଯ୍ୟା ।
ଆଜ୍ଞା ପ୍ରମାଣରେ ସେହି ମାନଚକ୍ରବର୍ତ୍ତୀ
ସୁସଞ୍ଜ ଶଯ୍ୟାଏ ଦେଲା ତୂଳାର ସୁପାତି ।
ଭୀଷ୍ମଙ୍କୁ ସେହି ଶଯ୍ୟାରେ ଶୁଆଇଲା ତୋଳି
ମହାରସ ଚଳନ୍ତେ ସେ ଶରୀର ପ୍ରଜ୍ୱଳି ।
ଶୁଆଇଲେ କଉରବେ ଗଲେ ନିଜ ସ୍ଥାନ
ରାତ୍ରଅର୍ଦ୍ଧେ ପାଣ୍ଡବଙ୍କୁ ଘେନି ଭଗବାନ ।
ପୌଷ ମାସ କୃଷ୍ଣପକ୍ଷ ସପ୍ତମୀର ରାତି
ପାଣ୍ଡବେ ଭେଟିଲେ ଯାଇ ଭୀଷ୍ମ ମହାରଥୀ ।
ଦେଖିଲେ ଭୀଷ୍ମଙ୍କର ଯେ ଏପରି ଅବସ୍ଥା
ଯୁଧିଷ୍ଠିଶୋକେ ବୋଇଲେ ଏହାହେଲା ପିତା ।
କୁଟୁମ୍ବ ଲୋକମାନଙ୍କୁ ଦେଇ ଏଡେ ଶାସ୍ତି
କେବଣ ଯଶ ନେବଟି ମାନଚକ୍ରବର୍ତ୍ତୀ ।
ଭୀଷ୍ମ ବୋଇଲେକ ଆହେ ଦେବ ଚକ୍ରଧର
ଶକ୍ତିନାହିଁ କରିବାକୁ ତୋତେ ନମସ୍କାର ।
କର ଚରଣ ମୋହର ଆଉ ନ ଚଳଇ
ମୋହର ଶରୀର ମୋତେ ଗୋଚର ନୁହଇ ।
ଭୀଷ୍ମଙ୍କ ଅବସ୍ଥା ଦେଖି ପ୍ରସନ୍ନ ଅଚ୍ୟୁତ
ବର ମାଗ ଭୀଷ୍ମ ତିନିବାର ସତ୍ୟ ସତ୍ୟ ।
ତୁ ମହାରଥୀ ଏ ମହୀମଣ୍ଡଳର ମଧ୍ୟେ
ତୋତେ ଜିଣିବା ସମର୍ଥ ନଥିଲା କେ ଯୁଦ୍ଧେ ।
ମୋହର ବଚନ ମାନି ପାଣ୍ଡବଙ୍କ ହିତେ
ଏସନ ଅବସ୍ଥା ହେଲୁ ଦେବ ଘଟସୂତ୍ରେ ।
ମାଗ ହୋ ଭୀଷ୍ମ ତୋହରମନେ ଯେଉଁକଥା
ତୁ ଯାହା ମାଗିବୁ ମୁହିଁ ଦେବାକୁ ଶକତା ।
ଭୀଷ୍ମ ବୋଇଲେ ହେହରି ଅନ୍ୟେ ନାହିଁମନ
ଅପୁତ୍ରକ ପାପ ମୋର କ୍ଷମ ଭଗବାନ ।
ରଣଯଜ୍ଞ କରି ଯେହୁ ଦେଖନ୍ତି ତୋ ମୁଖ
ସର୍ବ ପାପ ନାଶି ପାନ୍ତି ବୈକୁଣ୍ଠରେ ସୁଖ ।
ସେହି ମହାଯଜ୍ଞ ମୋତେ ନୋହିଲା ପ୍ରାପତ
ଅପୁତ୍ରିକ ଦୋଷୁ ପାରିକର ଜଗନ୍ନାଥ ।

ମାଘମାସ ଶୁକ୍ଳପକ୍ଷ ଯେଉଁ ଏକାଦଶୀ
ଏଥି ପ୍ରାଣଗଲେ ସୁଖୀ ହୁନ୍ତି ହୃଷୀକେଶି ।
ସ୍ୱାମି ଅନେକ ଝିଙ୍ଗାସ କର୍ଣ୍ଣ କଲା ମୋତେ
ଶରୀର ରଖିଲି ଯୁଦ୍ଧ ଶେଷ ପରିଯନ୍ତେ ।
ଶ୍ରୀକୃଷ୍ଣ ବୋଇଲେ ମୋର ଭକ୍ତ ଯେତେଜନ
ସେ ତୋହର ଧର୍ମପୁତ୍ର ଏ ଦୃଢ଼ ବଚନ ।
ଏହି ପ୍ରତିବାକ୍ୟ ଦେଲେ ଦେବ ହୃଷିକେଶ
ମୋତେ ଯେଭକତି ହେବ ସେତୋହରଶିଷ୍ୟ ।
କାର୍ତ୍ତିକ ଶୁକଳପକ୍ଷ ଦଶମୀର ତିଥି
ଭୀଷ୍ମ ଦଶମୀ ନାମରେ ହୋଇବ ଯୁକତି ।
ମୋର ଭକତ ଯେବଣ ଜନ ଚିତ୍ତ ଶୁଦ୍ଧେ
ଭୀଷ୍ମଙ୍କର ନାମ ଗୋତ୍ର ଦେଉଥିବ ଶ୍ରାଦ୍ଧେ ।
ପ୍ରୟାଗରେ ପିଣ୍ଡ ଦେଲେ ଯେତେ ଫଳଶ୍ରୁତି
ସେଫଳ ଲଭିବେ ଜନେ ତୋତେ କରିଭକ୍ତି ।
ଆହେ ଭୀଷ୍ମ ତୁଳ ଶୁକ୍ଳ ଦଶମୀର ଦିନ
ଭୀଷ୍ମ ଦଶମୀ ନାମରେ ହୋଇବ ଗଣନ ।
ଭୀଷ୍ମେ ବୋଇଲେ ଏବ୍ରତେ ନୋହିଲେକପୁଣ୍ୟ
କେହି ନ କରିବେ ଏହା ପୁଣ ଜନାର୍ଦ୍ଦନ ।
କୃଷ୍ଣ ବୋଇଲେ ଏ ବ୍ରତ ରାଜାର ସମାନ
ପ୍ରଥମରେ ବ୍ରତ କଲେ ପ୍ରାପ୍ତ ହୁଏ ପୁଣ୍ୟ ।
ଆଜହୁଁ ଭୀଷ୍ମ ଦଶମୀ ଆଉ ଏକାଦଶୀ
ଦ୍ୱାଦଶୀ ତ୍ରୟୋଦଶୀ ଯେ ଆଉ ଚତୁର୍ଦ୍ଦଶୀ ।
ଏହି ପାଞ୍ଚଗୋଟି ବ୍ରତ ତୋତେ ମୁଁ ଦେଲଇଁ
ଏହିପରି ବୋଇଲେ ଯେ ଦେବ ଯଦୁସାଇଁ ।
ଚବିଶ ଏକାଦଶୀରେ ଏହି ଅଟେ ରାଜା
ତୋହ ନାମରେ କରିବେ ସର୍ବଜନ ପୂଜା ।
ତୁ କ୍ଷତ୍ରିବୃତ୍ତି ତେଜିଲୁ ମୋର କାର୍ଯ୍ୟ ଅର୍ଥେ
ସର୍ବେଆତ୍ମଜ ପରାୟେ ପିଣ୍ଡ ଦେବେ ତୋତେ ।
ଭୀଷ୍ମ ବୋଇଲେକ ମୋତେ ଦେଲୁ ଯେସୁଗତି
ସର୍ବଧର୍ମ ପାଇଲଇଁ ଆହେ ଶିରୀପତି ।
ପୁଣି ବୋଇଲେ ପାଣ୍ଡବେ ଅଟନ୍ତି ମୋ ପୁତ୍ର
ଏବେ ଅର୍ଜିଲେ ସମ୍ପଦ ପାଇ ପରମାର୍ଥ ।
ତହୁଁ ଅର୍ଜୁନେ ବୋଇଲେ ଭୀଷ୍ମ ମହାତେଜା
କରିଦିଅ ରଣ ଶେଷଯାଏ ଶରଶଯ୍ୟା ।
ଏଥିରେ ବହୁତ ମୃତପିଣ୍ଡ ଯେ ପଡ଼ିବ
ଆବର ରକତନଦୀ ଏଠାରେ ବହିବ ।
ଯୋଗିଣୀ ପ୍ରେତ ପିଶାଚୀ ଏଠାକୁ ଆସିଣ
ନୃତ୍ୟରଙ୍ଗେ ମଡ଼ା ଖାଇ କରିବେ ଭ୍ରମଣ ।
ସୁପାତି ଶେଯେ ଲାଗିବ ମୋତେ ସୁଖେନିଦ୍ରା
ତାଙ୍କ ଭ୍ରମଣେ ଭାଜିବ ମୋର ମହାମୁଦ୍ରା ।
ନିଶାଚରୀଗଣ ପୀଡ଼ା ଦିଅନ୍ତି ଯେମନ୍ତେ
କର କାର୍ଯ୍ୟ ନିଦ୍ରା ଯଥା ନ ମାଡ଼ିବ ମୋତେ ।
ଭୀଷ୍ମଙ୍କ ବଚନେ ପାର୍ଥ ପେଷି ମନଭେଦୀ
ଶଯ୍ୟା ଗୋଟିଏ କଲା ସେ ଶରେ ଶରଛନ୍ଦି ।
ପୃଥ୍ୱୀର ଭିତରେ ଶର ତ୍ରିତାଳ ଭେଦିଲା
ଉପରକୁ ଛଅତାଳ ଉପର୍ଗ ହୋଇଲା ।
ଶିର ସୀମସ୍ଥାନ ଆଉ କନ୍ଧକୁ ଉଠାଇ
ନାରାଚ ରହିଲା ବେନି ସହସ୍ର ଯେ ଯାଇ ।
ବେନିଲକ୍ଷ ବାଣ ବହେ ବେନି ଯେ ଭୁଜକୁ
ପାଞ୍ଚଗୋଟି ବାଣ ବିନ୍ଧି ବକ୍ଷସ୍ଥଳ ଠାକୁ ।
ବେନି ପାଦରେ ରହିଲା ମର୍ଭୁତେକ ବାଣ
ଏମନ୍ତ ଶଯ୍ୟାରେ ଭୀଷ୍ମ କଲେକ ଶୟନ ।
ସେ ଶରଶଯ୍ୟାକୁ ଭୀଷ୍ମ କଲେକ ମନୀଷା
ଶୂନ୍ୟେ ଶରୀର ରହିଲା ଶରହିଁ ଭରସା ।
ମହାରସ ଗଳିତରେ ଅବଶ ଶରୀର
ଗଳି ନ ପାରିଣ ଦେହ ହୋଇଲା ସୁସ୍ଥିର ।
ନିଶ୍ଚଳ ହୋଇଣ ଭୀଷ୍ମ କେତେ ଦିନପାଇଁ
ଶରଶଯ୍ୟାରେ ରହିଲେ ଦୁଃଖସୁଖ ସହି ।
ଭୀଷ୍ମ ବୋଇଲେକ ସାଧୁ ସାଧୁରେ ଅର୍ଜୁନ
ପର ମନ ଜାଣୁ ତୁହି ତୋ ମହିମା ଧନ୍ୟ ।
ପର ମନ ଯେ ଜାଣଇ ସେହି ପରମାର୍ଥ
ପରକାଳରେ ତାହାର ନିଶ୍ଚେଁ ହୁଏ ହିତ ।
ମୋର ଆୟୁ ଘେନି ବର୍ତ୍ତ ଆରେ ଫାଲଗୁନି
ପଞ୍ଚରାଜ୍ୟେ ରାଜା ହୁଅ ଫଳୁ ଆମ୍ଭ ବାଣୀ ।
ବର ଦେଇଣ ଗାଙ୍ଗେୟ ହୋଇଲେ ତୃପତି
ପାଣ୍ଡବମାନେ ରହିଲେ ଭୀଷ୍ମଙ୍କର କତି ।
ଶରଶଯ୍ୟାରେ ଭୀଷ୍ମଙ୍କ ଦେହ କଲା ଜ୍ୱାଳା
ଦୁର୍ଯ୍ୟୋଧନେ ଜଳ ମାଗେ ଶାନ୍ତନୁଙ୍କ ବଳା ।
ବହୁଜଳ ଇଡ଼ାଇଲେ ନେଇ କୁରୁବୀର
ତଥାପି ଶାନ୍ତ ନୋହିଲା ଭୀଷ୍ମଙ୍କ ଶରୀର ।
ଅର୍ଜୁନକୁ ବୋଇଲେ ଯେ ଭୀଷ୍ମ ମହାରଥା
ବାବୁ ଦେହ ଜ୍ୱାଳାକରି ଦିଏ ବଡ଼ ବ୍ୟଥା ।
ଏହା ଶୁଣି ଜଳଶର କାଢ଼ିଲେ କିରୀଟି
ଧନୁରେ ଯୋଚି ବିନ୍ଧନ୍ତେ ଜଳ ହେଲା ବୃଷ୍ଟି ।
ଆକାଶରୁ ବରଷଇ ଯେହ୍ନେ ଜଳଧର
ସେହି ସଦୃଶେ ପଡ଼ଇ ଗଙ୍ଗାଜଳ ଧାର ।
ଜଳ ପଡ଼ନ୍ତେ ଭୀଷ୍ମଙ୍କ ସୁଶୀତଳ କାୟେ
ନିଶ୍ଚିନ୍ତେ ରହିଲେ ଭୀଷ୍ମ ସେ ଶରଶଯ୍ୟାୟେ ।
ଜୟ ଜୟ ଜଗନ୍ନାଥ ଅନନ୍ତ ମୂରତି
ଜୟ ଜୟ ଜଗନ୍ନାଥ ବଇକୁଣ୍ଠ ପତି ।

ଜୟ ଜୟ ଜଗନ୍ନାଥ କମଳାରମଣ
ଜୟ ଜୟ ଜଗନ୍ନାଥ ଦୁଃଖ ନିବାରଣ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ସର୍ବ ପିତାମାତା ।
ସମସ୍ତେ ବୋଲନ୍ତି ତୁମ୍ଭେ ଦୟାଳୁ ପୁରୁଷ
ସାଧୁଙ୍କୁ ରଖିଣ ପୁଣି ଦୁଷ୍ଟଙ୍କୁ ବିନାଶ ।
ଜୟ ତୁ ଦେବ ଈଶ୍ୱର ଅଭୟ ବାଳୁଙ୍କା
ସଂସାର ସାଗର ପ୍ରଭୁ ତୁହି ସିଦ୍ଧ ଏକା ।
ଶରୀର ଶୁଦ୍ଧସ୍ଫଟିକ ଜାଣିଣ ତାଟଙ୍କ
ନିଶାରକର ମୌଳି ନାଥ ଜୟ ତ୍ରିଅମ୍ବକ ।
ସଂସାର ଅଗାଧ ଜଳେ ଅଗୋଚର ମାୟା
ସବୁ ଗୋପ୍ୟ କଲୁ ନାଥ ତୋର ଏକକାୟା ।
ନିରାକାର ପୁରୁଷ ଯେ ନିର୍ମଳ କାୟଃଟି
ନିସତ କକ୍ଷଣୁ ମୋତେ ଉଦ୍ଧର ଧୂର୍ଜଟି ।
କାମୁକ ପୁରୁଷ ନାଥ ନାରୀ ଅର୍ଦ୍ଧକାୟେ
କାମୁକ ପୁରୁଷ ନାଥ ସର୍ବଦା ସଦୟେ ।
ସୁଜନ ଜନମାନଙ୍କ ହୃଦ ଜପାମାଳା
ଭଇରବରୂପେ ଦେବ ପାଳୁ ମହାଖଳା ।
ଭୂଜେ ପିନାକ ଖଟ୍ୱାଙ୍ଗ ଆଉ ପାଶୁପତ
ଶିରେ ଶୁକଳ ଶୀତାଂଶୁ ଚଣ୍ଡ ଲିଙ୍ଗଗାତ୍ର ।
ତ୍ରିପୁର ଧ୍ୱଂସିଲୁ ନାଥ କଉତୁକ ଖେଳେ
ଅନ୍ଧକ ନାଶିଲୁ ନାଥ ବଢ଼ାଇ ସଂପୋଢ଼େ ।
ଯୋଗେ ଯୋଗେଶ୍ୱର ପରମ ଯେ ଯୋଗଜିତ
ମଦନନାଶନ ଜିତେନ୍ଦ୍ରିୟ ସର୍ବପିତା ।
ପ୍ରଳୟ କାଚଣ ନାଥ ଅଭୟ ଭବାନୀ
ଶାରଳା ଦାସର ନାଥ ଘେନିବା ଦଇନୀ ।
ଆହେ ବୁଧଜନେ ନ ଘେନିବା ମୋର ଦୋଷ
ଏ ଜନ୍ମେ ପଢ଼ିଲି ନାହିଁ ନାହିଁ ପୂର୍ବାଭ୍ୟାସ ।
ଏ ଜନମେ ମୁରୁଖ ମୁଁ ନ ଜାଣଇ କିଛି
କିଞ୍ଚିତ ଭକ୍ତିରେ ଦୟା କଲେ ପିଙ୍ଗଳାକ୍ଷୀ ।
ଜାତ ଅନ୍ତ ମଧ ଅବସାନ ଯାର ନାହିଁ
ପରମ ଗତି ଇଚ୍ଛିଲେ ତୋ ଚରଣ ଧ୍ୟାୟି ।
ବଦନ୍ତି ଅଗସ୍ତି ଭୀଷ୍ମପର୍ବ ଅନ୍ତ କଥା
ଶୁଣ ବାବୁ ଅଷ୍ଟାଦଶ ପର୍ବର ବାରତା ।
କେହୁ ହେ ଯିବ ବା ଗଣି ଗଙ୍ଗାବାଲି ଦେଖି
ବଢ଼ବା ଅନଳେ କେବା କାଷ୍ଠ ଦେବ ଯୋଖି ।
ନିରାଶ୍ରିତ ଜନ ମୋର ଆଶ୍ରା କେହି ନାହିଁ
ଶରଣ ପଶିଲି ପ୍ରଭୁ ବେଗେ କର ତ୍ରାହି ।
କୃପାଜଳ ନନ୍ଦିନୀ ଗୋ ପ୍ରସନ୍ନ ହିଙ୍ଗୁଳା
ହୃଦଗତେ ମୁଁ ଚିନ୍ତିଲି ପ୍ରସନ୍ନ ଶାରଳା ।
କେଶରୀଆସନୀ ମାଗୋ ଝଙ୍କଡ଼ ନିବାସୀ
ଏ ଦୀନଜନକୁ ଭବତାପୁଁ ଉଦ୍ଧରସି ।
ଅନେକ ଜନ୍ମ ପାତକ ଦୁଃଖ ମୋର ଖଣ୍ଡି
ରଖାଅ ସେବାରେ ମାଗୋ ଶ୍ରୀଶାରଳା ଚଣ୍ଡୀ ।
ଶ୍ରୀମହାଭାରତ ଭୀଷ୍ମପର୍ବ ଦଶଦିନ
ଯୁଦ୍ଧ କଥା ତୋ କୃପାରେ କଲି ବିରଚନ ।
ନର୍ମଦା ସରସ୍ୱତୀଙ୍କ ପାଦେ ମୋର ସେବା
ନାରାୟଣ ଶ୍ରୀଶାରଳା ଦାସେ ମୁକ୍ତି ଦେବା ।

## ମହାଭାରତ ଭୀଷ୍ମପର୍ବ ସମ୍ପୂର୍ଣ୍ଣ

# ମହାଭାରତ






ପ୍ରକାଶକ-

ଧର୍ମଗ୍ରନ୍ଥ ଷ୍ଟୋର (TM)

ଅଲିଶା ବଜାର, କଟକ-୨

ଫୋନ୍ : (୦୬୭୧)୨୫୦୮୨୯୬

website : www.dharmagranthastore.com